ହରିଃ

# ଭଜନ ମନମୋହନ ।

ଶ୍ରୀମୋହନ ଚରଣ ଦାସଙ୍କ ଦ୍ୱାରା

ଦ୍ୱିତୀୟବାର ଛପାଗଲା ।



ମନମୋହନ ପୁସ୍ତକାଳୟ
ଶ୍ରୀମୋହନ ଚରଣ ଦାସ
ପୋ: ଗୁନ୍ଦଳାବେଳି
କଟକ

ମୂଲ୍ୟ ଟ ୦ ୯୨ ଦଶପଇସା ମାତ୍ର ।

ବିଷୟ ସୂଚୀପତ୍ର । ପୃଷ୍ଠା ।

# ଭଜନ ମନ ମୋହନ ।

## ପ୍ରଥମ ପ୍ରବେଶ ।

### ବଳଦେବଙ୍କ ଜଣାଣ ।



ତାଳ—ଏକତାଲି ।

( କଳା କୃଷ୍ଣ କମଳ ଅକ୍ଷି—ବୃତ୍ତେ )

ଦେବ ଦେବ ହେ ବଳ ଦେବ,

ଦୀନହୀନ ଜନେ କୃପା କରହ । ଘୋଷା ।

କେନ୍ଦ୍ରାପଡ଼ାରେ ଇଚ୍ଛାପୁରଠାରେ ଶଢେ କର ଜାଣି ଭକ୍ତବତ୍ସଳ ।
ସର୍ବଦା ପବନ ଯେ ତୁଳସୀ କ୍ଷେତ୍ର ବସିଅଛ ଯେଣି ସର୍ବ ସମ୍ମତ ।
ବଡ଼ ବଡ଼ ହାର, ବହିଛ ଗଳାର, ମହିମା କେ କଳି ଅବା ପାରବ ।
ପ୍ରଳମ୍ବା ଅସୁର କରିଛ ସଂହାର ହସ୍ତିନା ଟେକିଲ ରେବତୀ-ଧବ ।

କ୍ଷୀରବ୍ଧି ବହାଣ୍ଡ ଦେବ ପ୍ରଳମ୍ବାଣ୍ଡ କ ଦେଖି ହୋଇଲ ନିର୍ଦ୍ଦୟ ଭାବ । ଅମୃତକୁଁ ଜଳ ସ୍ୱାଦୁ ରସାବଳି ଅଟେ ଏହ ମାତ୍ର ଭୁଞ୍ଜିବା ଦ୍ରବ୍ୟ । ପତିତ ତାରଣ, ସେହିଣି ନନ୍ଦନ , ନିରଞ୍ଜନ ଅଂଶୁ ତବ ଉଦ୍ଭବ । ବଳିସ୍ଥାର ଭକ୍ତ ଜାଣି ଅଶ୍ରାଜଲି ହାଓଥ ଅଧମେ ପାର କରବ ।

——✱——

## ତ୍ରିନାଥଙ୍କ ଜଣାଣ ।



ତାଳ—ଏକତାଳି ।

( ଭକତଜନେ ମୋତେ ରଖ ମହାବାହୁ—ବୃତ୍ତେ । )

କୃପା ମୋହଠାରେ କର ହେ ତ୍ରିନାଥ କରୁଣା ମୋଠାରେ କର । ତୁମ୍ଭ ପାଦପଦ୍ମେ ଶରଣ ପଶିଲେ କି କରିବ ଦୁଃଖଘୋର ହେ । ବ୍ରହ୍ମା ବିଷ୍ଣୁ, ମହେଶ୍ୱର ତିନିଦେବ ଏକତ୍ରେ ବିରାଜ କର । ନ ସହିଣ ଦୁଃଖୀ-ଜନଙ୍କ କଷଣ ହୋଇଅଛ ଅବତାର ।୧। ଦରିଦ୍ର ବ୍ରାହ୍ମଣ ଦୁଃଖ ନ ସହିଣ ଅଗେ ସ୍ୱଦୟା ବହିଲ । ବେଣା ମୂଳ

ତନି ପଇସା ଦେଇଣ ନିଜ ପୂଜାବଧି କଲ ହେ । ଗୁଆ ଗଞ୍ଜାଇ ଯେ ପାନ ଖେଲ୍ ଅଦ ବ୍ରାହ୍ମଣ ଭରଣ ପୂଜା । ସେଲା ଭର ମହାଧର୍ମୀ ବୋଲଇଲ ଦରିଦ୍ରତା ହେଲା ଦୂର । ଅନ୍ତେ ଚକ୍ଷୁଦାନ ଦେଇଛ ଅପଣ ଶ୍ଳେଷ୍ଠା ପାଇଛ ପସ୍ତୁର । ଦରିଦ୍ର ଦୁଃଖ ଭଞ୍ଜନ ହେବା ପାଇଁ ସମ୍ବଳ ନାମ ତୁମ୍ଭର ହେ । ନ ମାରନ୍ତେ ସ୍ୱଜପୁତ୍ର ନାଶ ଗଲ ସୁଦୟା କଲ ତା ଠାରେ । ସେଲା ଭରବାକୁ ପୁଣି ଜୀବଦାନ ଦେଲ ବ୍ରହ୍ମାଣ୍ଡ ଠାକୁର । ଭୁଲ୍ ସୌଦା ଗର ସେଲା ନ ଦେବାରୁ ବୋଇତ ବୁଡ଼ଇଲ ତାର । ମହିମା ସ୍ମରଣ ସେଲା ସନାସନ୍ତେ ହେଲା ବିପଦୁ ଉଦ୍ଧାର । ନିନ୍ଦନ୍ତେ ବୈଷ୍ଣବ ଗୁରୁ ଯେ ତୁମ୍ଭଙ୍କୁ ତା ବଂଶ କଲ୍ ସଂହାର । ଭଜଇ ବାହୁଡ଼ା କ୍ଷମା ଦେଇ ପୁଣି ଭରନ୍ତେ ଦୋଷ ସ୍ୱୀକାର ।



## (ଶରୀର ଭେଦ । )

### ଗୀତ—ଅଙ୍କ ଭକ୍ତଙ୍କ ବାଣୀ

କମଳ କାଳନ୍ଦୀ ହ୍ରଦେ ଫୁଟିଛି । କ୍ଷୀର ନାଳରେ ହଂସ ଖେଳୁଅଛି । ଗଗନ ଶିଖେ ବସେ ଗୋଲ୍ଲହାଟ । ଘଟେ ଘଟେ ଯେ ବ୍ରହ୍ମର ପ୍ରକାଶ । ଉଦେ ହୋଇଅଛି । ଚନ୍ଦ୍ର ସୂର୍ଯ୍ୟରୂପେ ଲୀଳା କରୁଛି । ୧। ଷଡ଼ଚକ୍ର ପରେ ଛଇଳ ବର । ଜ୍ୟୋତିମଧ୍ୟରେ କରଇ ବିହାର । ଝର ଝର ବହେ ତ୍ରିବେଣୀ ଧାର ନିରତେ ପଞ୍ଚେ ହର ମନ୍ତ୍ରବର । ଖେଳିଲେ ଜାଣି । ପୂଜଣୂନ୍ୟ ରୂପ ଦେଖିବୁ ପୁଣି । ଡ଼ୋଳାରେ ଡ଼ୋଳା ରଖ ତୁ ମଜାଇ । ଝଳଝଳ ଦଶେ ସ୍ୱରୂପ ତହିଁ । ଅନହତ ଘରୁ ଶବ୍ଦ ଶୁଣୁଛି । ଖାକୁବା ଦ୍ୱାରେ ବାଟ ଫିଟିଅଛି । ଥସ୍ତେ ଦଅ ଗୃହିଁ । ଦେଉଳରେ ଦଅଁ ବସି ଅଛଇ । ଧ୍ୟାଇ ଧ୍ୟାନକୁ ରଖ ଖଟର ପଣ । ନିରଞ୍ଜନ ତହିଁ କରଇ ବାସ । ପରତେ ହୋଇଲେ ପରମ ସଙ୍ଗେ । ଫୁଲ୍ଲା ବନ୍ଧ

ନୃତ୍ୟ ଦେଖିବୁ ତେବେ । ବୃନ୍ଦାବନେ ହବ । ଭକତ ଘାବେ ଛନ୍ତି ଅବତର ॥ ମନେ ମାନସିକ ଭକ୍ତି ତୁ କର । ଜ୍ୟୋତିର୍ମୟ ବ୍ରହ୍ମ ରୂପ ଠାବର । ରଖ ନିରତେ ଚିତ୍ତକୁ ଟେକାଇ । ଲହରୀ ଘନ ଘନ ଅସୁଥଇ । କର୍ଣ୍ଣନାଳେ ପଶାଶୂନ୍ୟ ମଣ୍ଡଳେ ଦେଖିବୁ ସହାସ । ସକାର ମକାର ଜକାର ତନି । ଶବଦ ଓଁକାର ବେଦର ଧ୍ୱନି । ହଂସ ଲେଉଟି ରହିଛି ସେଠାରେ । ଯତନେ ଯତନେ ଚିତ୍ତ ରଖୁ ତସେଠାରେ । ଯମ ସାଧୁଜନ । ଘୁର ବାହୁଡ଼ା ମାଗଇ ଶରଣ ।



ଛାଳ—ଯତ୍ ।

ଜ୍ଞାନୀ ହୋ ମନେ କର ଝସ୍ବର ।
ସହସ୍ର ଦଳରେ ବନ୍ଧ ଭ୍ରମର । ପଦ ।

କାଳନ୍ଦୀ ହ୍ରଦରେ ପାରୁଥ ବସା । ଗିଳୁଛି ସିଂହକୁ ସେଠାରେ ଶଶା । ହସ୍ତୀ ମଣ୍ଡୂକର ସଂଗ୍ରାମ ଗୋଳ । କୋକନଦେ ଫୁଟିଅଛି କମଳ ॥ ନେଇଳ ତୁଣ୍ଡେ ରହିଛି ଦେଉଳ । ଶିବମୁଣ୍ଡେ ଶକ୍ତି କରେ ବେହାର । ବୀଣା ବାଜଇ ଶୂନ୍ୟ ମଣ୍ଡପର । ରୋପ ପାଟଣା ଥାଇ ଗୋପନର । କହଇ ବାହୁଡ଼ା ଯୋଡିଣ କର । ସାଧୁ ସନ୍ଥ ପଦେ କର ଯୁହାର ॥



ରାଗ—ଖେମଟା ।

ଶ୍ୟାମଙ୍କୁ ବାରେ କହିବୁ ଯାଇଁ
ଅଣିବେ କମଳ ତୋଳି ମୋ ପାଇଁ । ପଦ ।

ପଞ୍ଚାଶ ମୂଲ୍ୟ କନ୍ଧ କହାଇଲେ ଷୋଳ ପାଇକଙ୍କୁ ସଙ୍ଗତେ ନେଇ । ଅଗେ ଗୁପ୍ତ କନ୍ଧ ବାନ୍ଧିଲ କେଳକୁ ଶୂନ୍ୟରୁ ଲହରୀ ମାଡି ଅସଇ । ପଚାଶ ମୂଲ୍ୟ ଥିଲେ ଜଗୁଥିଲ ରାତ୍ର ଦନ ନିଦ୍ରା ଅହାର ନାହିଁ । କାଳନ୍ଦୀ ହ୍ରଦରେ ଜନ୍ମାଣି ଟେକିଛି ପଞ୍ଚଥ ଛଠିଅ କାରଣ ନାହିଁ । ବାସ୍ତବ ଯୋଜନ ଜଳର

ଗମ୍ଭୀର ବ ଜନୀ ହୃଦେ କମଳ ଅଛଇ । ଶଏ ଷାଠିଏ ପାଖୁଡ଼ା ଲାଗିଅଛୁ ନାଗୁଣୀ ଗର୍ଜ୍ଜନେ ଦଏ କମ୍ପାଇ । ସେହି ଢାମରସେ ଏଡ଼େ ମନ ରସେ ଦେଖିଲେ ବାହୁଡ଼ି ଆସଇ ନାହିଁ । ଖ୍ରୀମା କହେ ଦୂତୀ କହିବୁ କାହ୍ନୁକୁ ସରଧା କରୁଛି ସୋହାଗୀ ସ୍ୱଇ ।



( ବାଳବ କିସ ଖ୍ୱଳ—ବୃତ୍ତେ )

କ ଖ୍ୱବି ସ୍ୱଧା ନାଥ, ଶଙ୍ଖ ଶାରଙ୍ଗ ହସ୍ତ,

ମୋହନ ବଂଶୀ ତେଜି ରହିଲ କି । ପଦ ।

ତେଜିଣ ବ୍ରଜପୁର, ରହିମାନଜନ୍ଦର, ଭସାଇଦେଲ ଗୋପଗୋଇଙ୍କି ହେ । ସେ ଗିରି ଗୋବର୍ଦ୍ଧନ, ସେ ନିକୁଞ୍ଜ କାନନ, ନାରଖାର ସବୁ ନ କଲ କି ହେ । ୧ । ଚନ୍ଦ୍ର-ଶାଳାର ପୁର, ଭାଙ୍ଗି ହେଲଣି ଯୁର କାନ୍ଦନ୍ତି ଗୋରୁ ବଛୁ ଏଣିକି ହେ । କାନ୍ଦ ଗଡ଼ନ୍ତି ମାତ, ଯଶୋଦା ନନ୍ଦ ତାତ, ତୁମ୍ଭ ବିହୁନେ ଅନ୍ଧ ହେଲେକିକି ହେ ।୨। ମୟୂର ସାରୀ ଶୁକ । ହଂସ ସାରସ ପିକ, କାନ୍ଦନ୍ତି ବନେ ତୁମ୍ଭ ପାଇଁକି ହେ । ସଖା ଦାମ ସୁଦାମ, ସୁବଳ ଅଦଙ୍କାଣ, ଲୋଡ଼ନ୍ତି ତୁମ୍ଭ ସଙ୍ଗ ପାଇଁକି ହେ । ୩ । କେଳି କୁଞ୍ଜମନ୍ଦର, କଦମ୍ବ ବୃକ୍ଷ ତୋର, ନିଷ୍ଠୁର ପଣେ ମୂଳୁଛୁଲ କହେ । କାନ୍ଦ କାନ୍ଦ ଶ୍ରୀମତୀ, ଭୂମିରେ ଲେଟୁଛନ୍ତି, ଲଳିତା ବିଶାଖାଙ୍କୁ ଭୁଲିଲ କି ହେ । ୪ । ମାଳହୋଇଣ ଦନେ, ମିଳି ସ୍ୱଧା ସଦନେ, ଦେଇ ସୁମନମନ କିଣିଲ କି । ନାପିତ ବେଶ ହୋଇ ଗୃହେ ବଚନ କହି ଶ୍ରୀପଦେ ଲାକ୍ଷାରସ ବୋଳିଲ କି । ୫ । ରଜକିନୀ ବେଶରେ, ପାଲଟା ବସ୍ତ୍ରଣିରେ, ଜଡ଼ାଇବାର ଶ୍ୟାମ ଭୁଲିଲ କି । ଯମୁନା ନଦୀ ଧାରେ, କଇବର୍ତ୍ତ ରୂପରେ, ପାଇକର-ବାର ପାସୋରିଲ କି । ୬ ସ୍ୱଧା ମନ୍ଦରେ ଭୃତ, ହୋଇଥିଲ ତୁମ୍ଭେତ କଳଙ୍କ-ଭଙ୍ଗ ଭୁଲି ହୁଅଇ କି । ହୋଇ ଥିଲ ସୁନାର କାଚସ୍ତ ବେଶ-ଧାସ୍ତ, ସେ କଥା ଖ୍ୱଳି ହୃଦ ସହିବ କି । ୭ । ଦଣ୍ଡେ ଯାକୁ ନ ଦେଖି, ହେଉ ଥାଉ ବିମୁଖି, ସତ୍ର ଦବସେ ନିଦ୍ରା

ଅସିବ କି ? ଧରଣି ଯୋଗି ରୂପ, ଅହେ ବରଜ ଭୂପ, ପୀରତି ଦାନ ଭିକ୍ଷା ମାଗିବ କି ହେ । ୮ ।ତୁମ୍ଭ ଦାସ କିଙ୍କର, ଶ୍ରୀ ଚରଣ ତୁମ୍ଭର, ଭରସା ବିନୁ ଆନ ନାହିଁ କି ହେ । କହୁଛି ଯୋଡ଼ି କର, ବିନତି ଘେନା କର, ଶ୍ରୀମନ୍ତଙ୍କୁ ରକ୍ଷିଣ କହନ୍ତି । ହେ । ୯ ।



## ଅକ୍ଷର ଭେଦ ଚଉତିଶା ।

କ୍ଷ ଅକ୍ଷରେ ଜୀବ ରହେ ଗୁପତେ । ହକାରେ ପରମ ଯେ ଖେଳଇ ନିତ୍ୟେ ହେ । ହେଳା ନକର । ହେତୁ କରି ହକାରେ ସକାରେ ଧରି ହେ । ଷଡ଼ ଚକ୍ରକୁ ରଖ ଅପୃଷ୍ଠ କରି । ଶିଶୁମ୍ନା ରନ୍ଧ୍ରରେ ମନକୁ ଭରି ହେ । ସନ୍ତ-ସଙ୍ଗ କର । ଶବ୍ଦ ଜାଣିଲେ ଭେଟ ପାଇ ତାହାର ହେ । ୨ । ବେଢିଛନ୍ତି ମଣ୍ଡଳ ଭ୍ରୂଲତା ମଧ୍ୟରେ, ଲକ୍ଷ୍ୟ ରଖିବୁ ଦୃଢେ ସେହି ଠାବରେ ହେ । ରାସ ଉତ୍ସବ । ରାଧିକା ବୃନ୍ଦ ସଙ୍ଗେ କରିଣ ଭାବ ହେ ।୩। ଯାହାଙ୍କ ଲାଗି ବନ୍ଧ ଦୃଢେ ରଖ ବନ୍ଧାଇ, ଯଶୋଦା-ନନ୍ଦନର ପୀରତି ପାଇଁ ଯେ । ମଜ୍ଜନ ହୋଇ । ମନ ନିବେଶି ଥିବୁ ତା ପାଦେ ଯାଇଁ ହେ ।୪। ଭ୍ରୂଲତା ଦୁଇ ମଧ୍ୟେ ରଖି ନୟନ ବିନ୍ଦୁ ରୂପକୁ ସଦା କରୁଥା ଧ୍ୟାନ ହେ । ଫୁଙ୍କା ବନ୍ଧରେ । ଫିଟିଅଛି ନିଗମ ପଥ ସେଠାରେ ହେ । ୫ । ପଣ ଶରଣ ପଦ୍ମ ପାଦରେ ଯାଇଁ । ଅନାଦି ନିରଞ୍ଜନ ଶୂନ୍ୟେ ଖେଳଇ ହେ । ଧାରଣା କର । ଧ୍ରୁବ ଯାହାକୁ ଚିନ୍ତି ହେଲା ଉଦ୍ଧାର ହେ । ୬ । ଦେଉଳ ହୋଇଅଛି ଶୂନ୍ୟେ ନିର୍ମାଣ । ଥକା ପ୍ରାଣେକ ସ୍ତମ୍ଭ ପାଶେ ସ୍ଥାପନ ହେ । ଅକାରେ ଅଛି । ଅର୍ଦ୍ଧରେ ଗୃହ ଗୋଟି କଳସ ଲାଗିଛି ହେ । ୭ । ଢାଙ୍କିଛି ସପ୍ତଫଣୀ ବାମରେ ତାର, ଡାହାଣେ ଉଡ଼େ ଧ୍ୱଜା ଦେଉଳ ପର ହେ । ଠକାର ପର ଠ ଅର୍ଦ୍ଧଚନ୍ଦ୍ର ଠ ନିମ୍ନରେ ଠାବ ହେ ।୮। ଟେକି ବାୟୁ ଜଗାଣି ଠାକଣ ଥାଅ, ନୂଆ ନୂଆ ଭକ୍ତିରେ ଯନ ମଙ୍ଗାଅ ହେ । ସ୍ୱଚ୍ଛେ ରୂପ ଝାଙ୍କିଲା ଯିବ ସଜ ହୋଇଛି ଦେଖ ହେ ।୯। ଜୀବନ ଥାଉଁ ଜୀବ କର

ସଗୁର ହେ, ଛଡ଼ଚକ୍ର ଭେଦଣ ଶୂନ୍ୟ ମନ୍ଦିର ହେ । ଚନ୍ଦ୍ର ସୂର୍ଯ୍ୟଙ୍କୁ ଶଆଁଇ ବନ୍ଦକଲେ ଭେଟି ତାହାଙ୍କୁ ହେ । ୧୦ । ଉଦେ ହୋଇଛନ୍ତି ଚନ୍ଦ୍ର ଷୋଳ କଳାରେ । ଯୋଟି ରହନ୍ତି ଗୁପ୍ତେ ରବି ମଧ୍ୟରେ ହେ । ଗୋଲ୍ଲ ହାଟରେ । ଗମିଣ କଣା ବିକା କରା ସେଠାରେ ହେ ।୧୧। ଖଟିଛନ୍ତି ଯେ ପାଦେ ବ୍ରହ୍ମା ଶଙ୍କର,କମଳା ଚଞ୍ଚଳାଦି ଯା ପରଗୁର ହେ । କର ଯୋଡ଼ଣ । କହେ ମୂଢ ବାନୁଜ ପାଦେ ପଡ଼ଣ ହେ । ୧୨ ।



( ପ୍ରାଣ ସଙ୍ଗିମାରେ ନେତ୍ରାନନ୍ଦ ପସସ୍ୱ—ଭୃଦ୍ୱେ । )

କଳେ ବିକଛୁରେମଥା ପଦ୍ମପାଦର । ଅହେପ୍ରଭୁ ଚକ୍ରଧର । ପଦ। ଅନନ୍ତ ଶିର ଉପର, କରୁ ଅଛ ହେ ବିହାର, ବୃନ୍ଦମଲ୍ଲ ଭବଜଳେ ଏଥି ଉଦ୍ଧାର । ୧ । ଶରଣ ରକ୍ଷଣ ବାନା, ଏବେ ହୋଇଲା କି ଚୂନା, କର୍ମ ବାମ ଦେଖି ହୋଇଲ କି ବଧିର । ୨ । ଜାଣି ଅବଶ ଗଜର, ମାରଣ ଥିଲ କୁମ୍ଭୀର, ରଖିଣ ଥିଲ ଶରଣ୍ୟ ବିଭୀଷଣର । ୩ । ଦେଖି ଦୁଃଖ ସ୍ୱାମି ଘୋର, ହେଜ ଅଛ କି ନିଷ୍ଠୁର, ବନ୍ଦ ହୋଇଛି କି ଅଟା ଚକ୍ରର ଧାର । ୪ । । ଦୀନ ହାଡ଼ିଆ କହଇ, ଶ୍ରୀଚରଣେ ମଥାଦେଇ, ରଖ ମୋତେ କରି ଛତ୍ର ମହାନିତ୍ୟର । ୫ ।



ତାଳ—ଛପକା ।

ଷଣେ ନ ଛପିଲ୍,

ରାମ ନାମ ଧର । ଅରେ ମନ ସାଗ୍ର । ପଦ ।

ସୁବର୍ଣ୍ଣ ପିଞ୍ଜର ମଧ୍ୟେ ଥାଇ, ନିତ୍ୟଲୀଳା ରଙ୍ଗ କରୁ ତୁହି;ଜାଣୁନାହୁଁ ତୁହି ସଞ୍ଚାଣ ରହନ୍ତି । ଦିନେ ଦେଖିପିବ ଝାମ୍ପି କର । ୧ । ମନେ କରୁ ଦିବ୍ୟରୂପ ତୋର, କରୁ ଥାଇ କେତେ ଅହଙ୍କାର, କରୁ ଥିଲେ ପିଣ୍ଡ ତୋର ଖଣ୍ଡ ଖଣ୍ଡ । କେହ ନ ବୋଲିବେ ଅହା

କର । ୨ । ପୁତ୍ର ସମ୍ପତ୍ତି ସ୍ୱରୂପା ଘର, ଯଥା କାଳେ କେ ନୋହିବେ ତୋର । ମଢ଼ା ବୋଲି କରି ଶ୍ମଶାନକୁ ନେଇ ପୋଡ଼ାଇଣ ଦେବେ ବେଗେ କରି । ୩ । ଗୁରୁ ପାଦେ ନ ରଖୁ ତୁ ମନ, ଦୁଃଖିରଙ୍କିକୁ ନ ଦେଉ ଧନ ! କହ୍ନାଇ ବାହୁଡ଼ା ସର୍ବ ଅଶେଷ ଖର, ଯେବେ ହୋଇବୁ ଏ ଭବୁ ପାର । ୪ ।



### ତାଳ ଯତି

ଶ୍ରୀ ଜଗନ୍ନାଥଙ୍କୁ; କମଳା କାନ୍ତଙ୍କୁ;ଧ୍ୟାନ କର ହେ ମନ ଶ୍ୱେତ ପଦ୍ମନେତ୍ରଙ୍କୁ । ପଦ । ବଡ଼ ବଡ଼ ଧଣ୍ଡ୍ରାମାଳା । ଶୋଭିତ ହୋଇଛି ଗଳା, ତାଙ୍କ ଶ୍ୱେତ ପଦ୍ମଡୋଳା ଭବାର୍ଦ୍ଧି ତାରଣେ ଭେଳା, ଜୟେ ପଞ୍ଚକଳା ହେ । ନୃହ ତୁ ଭ୍ରୋଳା ହେ । ହେଳା କଲେ କାଳ କାଷ୍ଟେ ବୁଡ଼ାଇବ ଭେଳାକୁ ।୧ ଗୁରୁ ଛଅ ଦଶ ବାର, ଷୋଳ ଦୁଇ ଏକ କର । ଅବନା ଅଠ ସଙ୍ଗର, ସିଦ୍ଧି ବସ୍ତୁ ଯୋଗ କର । ଏକାକ୍ଷର ହେ, ଧ୍ୟାୟତତ୍ତ୍ୱର ହେ, ନିତ୍ୟସ୍ଥଳେ ଦର୍ଶନ ତୁ କର ରାଧା କୃଷ୍ଣଙ୍କୁ । ପଞ୍ଚ ବିଜ ପଞ୍ଚ ତତ୍ତ୍ୱ, ପଞ୍ଚ ମାତ୍ରା ପଞ୍ଚବାତ, ସବୁକୁ କର ଏକତ୍ର ଅମନ ମନ୍ଦିରେ ଶାନ୍ତ । ଗୁରୁ ସଙ୍ଗାତ ହୋ । ମାତ୍ରା ଦ୍ୱାଦଶ ହୋ । ସହସ୍ର ଦଳେ ପଶିଣ ଭେଟ ନାଦ ବିନ୍ଦୁକୁ । କହେ ଅଧମ ଅଚ୍ୟୁତ ଏହିଭାବେ ମୁହିଁ ଭୃତ୍ୟ । ସାଧୁ ସନ୍ଥ ପାଦେ ଚିତ୍ତ, ରହୁ ମୋର ଅବିରତ । ମୁହିଁ ଅର୍ପିତ ହେ । ତୁମ୍ଭର ଭୃତ୍ୟ ହୋ । ସଦଗୁରୁ ସେବିଥିଲେ ପାଇବ ଏ ଭେଦକୁ । ୪ ।



( ତାଳ—ଅଡ଼ଖେମଟା । )

ବାଇମନରେ ହେଲୁ ଓଲଅ ଗାଈ । ଯେତେ ବୁଝାଇଲି ସତ ଉପଦେଶ ମୋହ ବୋଲି ତୁ ଯେ ମାନିଲୁ ନାହିଁ । ଦେ । କେଉଁ ମୋହ କାମ ମାୟା ସଙ୍ଗେ ପଡ଼ି ଦରାଣି ତୁ ଯେ ହୋଇଲୁ କାଇଁ । ଜନସ୍ଥ ଭିତରେ ବାଘ ଜଗିଅଛି ପଲଟେ ମାରିଣଦେବ ଯିବଟିଁ ।୧।

ସ୍ୱମନାମଘାସ ନ ଖାଇଣ ତୁ ଯେଉଁ ଗୁଣରେ ବନ୍ଧାହୋଇଲୁ ପାଇଁ । ଚେତନା ଗୋପାଳ ଗୁହାଳ ଭାଙ୍ଗିଣ ଚଳାଇଣ ଗଲୁ ଦାଣ୍ଡରୁ ଡେଇଁ । ୨ । ଏକାକ୍ଷର ଖୁଣ୍ଟେ ବାନ୍ଧିଥିଲି ଅଣ୍ଟେ ହରିନାମ ଧଡ଼ା ସେଠାରେ ଦେଇ । ଛିଣ୍ଡିକା ମନ୍ତ୍ରର ଛିଏ କଲୁ ତୋତେ ଭାଙ୍ଗି ପଳାଉଛୁ ଧଡ଼ା ପକାଇ । ଚାର ବାଟି ବିଲ ପଡିଆ ପଡ଼ିଛୁ ବସ୍ତା ମରିଯିବ କ୍ଷୀର ନ ପାଇ । ବାର୨ ତୋତେ ବୁଝାଇ କହୁଛୁ ଦଗାଦେଇ ମୋତେ ନ ଯା ପଳାଇ । ୩ । କହଇ ବାଗୁଡ଼ା ଗୁରୁ କୃପାଥିଲେ ଏବାର ସେବାର ହୁଅନ୍ତୁ ନାହିଁ ; ହେ ଗୋପଳ ପୁଅ ମୋହର ଗାଈକୁ ଦେବ ପ୍ରଭୁ ଏଥର ସଜଡ଼ାଇ । ୪ ।

——୦ଃ୦——

( ସମାରମଣୀ ଛୁରେ—ବୃତ୍ତେ )

ବୁଝ ବୁଝ ହେ ଭାବ ଏତେ ମର୍ମ ଫିଟାଇ । ଚନ୍ଦ୍ରାବଳୀ ପ୍ରେମ ରୂପା ଯେ ମୁରଲୀ ବଳଦେବ ସହଚରୀ କେ ହୋଇ । କେ ବାବା ଶେଷ ଦେବ । ବୁଝାଇ ବୁଝ ଏ ଭାବ । କେଉଁ ରୂପରେ କାହିଁ, ଗୋପନେ ଛନ୍ତି ବହି, ଜଗନ୍ନାଥ କୃଷ୍ଣ କାମ ନାମ କେ ବୋଲାଇ । ୧ । ଲକ୍ଷ୍ମୀ ଲକାର ନାମ-ପୃଥିବୀ ସୁଭଦ୍ରା ପୁଣି ସମ ରମାଦ ବୀଜ ସୁଦର୍ଶନାଦ ହେଙ୍କ ଅର୍ଦ୍ଧମାତ୍ରା ବୋଲିଣ ଯେ କାହାକୁ କହ । ୨ । କେ ବିନ୍ଦୁ, ନାଦ ବ୍ରହ୍ମ ସିଂହାସନ ପରମ । କେତେ ବୀଜରେ ଏହା ଗଠିତ ହୋଇ ଅଛଇ କହିବ ଶରତ ଦାସ କାରଣ ପାଇଁ । ୩ ।

( କେ ମୁରଲୀ ବଜାଉଛି ବୃନ୍ଦାବନେ—ବୃତ୍ତେ )

ଶୁଣ ମନ ଦେଇଣ ହେ ସୁଜନ ଜନ । ସଦଗୁରୁ ସେବାରୁ ବୁଝ ଏମାନ । ମୂଳ ଶୂନ୍ୟ ଯେ ଓଁକାର ତହିଁ ମଧ୍ୟେ କାରବାର । ପଞ୍ଚ ବୀଜରେ ସବୁ କଲେ ଗୋପନ । ୧ । କ୍ଲୀଁ ବୀଜ ଚନ୍ଦ୍ରାବଳୀ ପ୍ରେମ ରୂପା ଯେ ମୁରଲୀ ଲକାର ଶେଷଦେବ ଦୁର୍ଗା ଏ ଜାଣ । ୨ ।

ଶ୍ରୀଁ ସୁଭଦ୍ରା ବୋଲାଇ ଲକ୍ଷ୍ମୀ ଲକ୍ଷାରଛି ହୋଇ । ପୃଥ୍ୱୀ ରମାବୀଜ ରୂପ ମନରେ ଘେନ । ୩ । କ୍ଲୀଁ କୃଷ୍ଣ ଜଗନ୍ନାଥ କାମ ବୀଜ ନାମ ଖ୍ୟାତ । ଧ୍ଲୀଁ ସୁଦର୍ଶନ ଅର୍ଦ୍ଧମାତ୍ରା ବଖାଣ । ୪ । ହ୍ଲୀଁ ବିନ୍ଦୁ ଯେ ପରମ ବ୍ରହ୍ମ ସିଂହାସନ ଜାଣ, ଅଧମ ଶରତ ଦାସତାଙ୍କ ଶରଣ ।୫।

( ଶରୀର ଭେଦ )

ଶୁଣ ହେ ସୁଜନ ଜନେ ମନକର୍ଣ୍ଣ ଦେଇ । ଶରୀର ଭେଦ ମୁଁ କହୁ କହିବି ବୁଝାଇ । କରୁଣାବ୍ଧି ହେ । କହିଥିଲେ ଯାହା ସଦଗୁରୁ ହେ । ୧ । ପଞ୍ଚଭୂତେ ଗଢା ହୋଇଅଛୁ ଏ ଶରୀର । ପଞ୍ଚମନ ଚରିଶ ପ୍ରକୃତ ଯୌରଛଡ଼ । ଏଥି ସ୍ଥିତ ହେ ! ଏକାଦଶ ଇନ୍ଦ୍ର ଦଶବାଟ ହେ । ୨ । ଅସ୍ଥି ଚର୍ମ ଲୋମ ନାଡ଼ ମାଂସ ପୃଥିବୀର । କଳାବଳ ଶୁଭାଶୁଭ କ୍ରୁଟି ଅଦ୍ୟେ ଧର । ସୁର ଜ୍ୟୋଷ୍ଠି ଚ୍ଛେ । ଅପାନ ବାୟୁରେ କରେ ଗୋଷ୍ଠି ହେ । ୩ । ଆହାର ନିଦ୍ରାମୈଥୁନ ଜାଗ୍ରତ ଅବର, ମଦମତ୍ସରାଦି ଛନ୍ଦଅଭିମାନ ଧର । ଅପଭୂତେ ହେ । ବିଷ୍ଣୁ ରହନ୍ତି ଅପେ ସେଥେଁ ହେ । ୪ । ଭସ୍ମ କାଳରୁଦ୍ର ବଜ୍ର ବ୍ରହ୍ମାଦି ଯେତିଣ । ତେଜ ଗୁଣ ଯେତି ହର ରହନ୍ତି ପୁଣ । ଲୁ ପ୍ରକୃତ ହେ । ଅଳସକ୍ଷୁ ବଳଆଦି ସ୍ଥିତ ହେ । ଶବ୍ଦ ସ୍ୱାଦୁ ରସ ଯେ ଆମୋଦ ଆଦି ଗୁଣ । ଟାହି ହସ ହଂସା ପୂର୍ଣ୍ଣ ବିରସାଦି ଗୁଣ । ମରୁତର ହେ । ଏତେ ଗୁଣ ରହେ ଶୁଣ ଧୀର ହେ । ୬ । କାମ କ୍ରୋଧ ଲୋଭ ଖଳ ଲଜ୍ଜା ଯେ ଲାଳସା । ଗୁମାନ ଲମ୍ପଟ ଅହଂକାର କୁଟଭାଷା । ଏତେ ଯେତି ହେ । ଆକାଶ ରହଇ ଏଥି ପୁଣି ହେ । ୭ । ଗଙ୍ଗାଯମୁନା ଯେ ସରସ୍ୱତୀ ତିନିଧାର । ଇଡ଼ା ପିଙ୍ଗଳା ସୁଷୁମ୍ନା ନାମ ଅଟେ ଯାର । ସୁଷୁମ୍ନାରେ ହେ । ବ୍ରହ୍ମରନ୍ଧ୍ରା ନାଡ଼ ଗୋପନରେ ହେ । ୮ । ତ୍ରିବେଣୀ ତ୍ରିକୂଟ ସ୍ଥାନ ତିନି ତନ୍ତୁଡରେ । ତିନିବୀଜ ତିନିମୂର୍ତ୍ତି

ରହନ୍ତି ସେଠାରେ । ବାୟୁଛନ୍ଦ ହେ । ନିର୍ଗୁଣ ବଚ୍ଚରେ ହଂସ ବାନ୍ଧ ହେ । ୯ । ବାଘପଙ୍ଗେ ବଳଦ ଯେ ବନ୍ଧା ହୋଇଅଛୁ । କୁଅ ହଡ଼ା ରଖୁଅଛି ତହିଁ ହୋଇଅଛୁ । କୁକୁଡାକୁ ହେ । ଅପୂର୍ବରେ ରଖ ଜାଣିବାକୁ ହେ ।୧୦। ବାଘୁଣୀ ଯେ ତହିଁ ନେଉ ଅଛଇ ଅଡାଇ । କୁମ୍ଭୀର ଅଣ୍ଡାରେବାଘ ବେଗ ଅଛିହୋଇ । ମେଣ୍ଢା ତହିଁ ହେ । ବୈଦ୍ୟପଣ କରୁଅଛି ବହି ହେ ॥ ବଡ଼ ପରଶ୍ରମେ ମୂଷା ବୁଣେ ଧାନ ଖେତ । ସର୍ପ ତହିଁ ଶିଅଳକୁ କରଇ ଅଘାତ । କରକଟ ଯେ । ଗୁଜଳ ପଣରେ କରେ ନାଟ ଯେ । ୧୨ । ଗାଈ ଯେ ବାଛୁରୀ ତହିଁ ପ୍ରସବ କରଇ । ପିମ୍ପୁଡି ଯେ ବହି ତହିଁ ଶୁଳ ଘେନି ଥାଇ । ପର୍ବତରେ ହେ । ଶେଉଳ ବହୁଅଛି ଗୁପତରେ ହେ । ସମୁଦ୍ରେ ହରଣୀ ବେନି ଚରୁଛନ୍ତି ଦେଖ । ଏ ଭାବ ବୁଝିବାଇଦେବା କେମନ୍ତ କରୁପ । ଦୋଷ ମୋର ହେ । ନ'ଘେନିବ ଚିତ୍ତେ ସାଧୁ ନର ହେ ।୧୪। ବାଘଟି ଯେ ମୋହ ବୋଲି ସତ ଯେ ବଳଦ । କୁକୁଡ଼ା ଯେ କାମନାଟି ଲୋଭ ରଖୁଅଛି । ବାଘୁଣୀକି ହେ । ଅହଂଗୁଣ ବୋଲି କହୁଛନ୍ତି ହେ । ୧୫ । କୁମ୍ଭୀରଟି କାଳଅଣ୍ଡେ ମେଣ୍ଢା ସଖା ହୋଇ । ମୂଷା ଦେଖ ବୁଣେ ଖେତ ଅଖଣ୍ଡ ବ୍ରହ୍ମହିଁ । ସର୍ପ ସେହି ହେ । ଜୀବ ହୋଇ ଯାଉଅଛି ବହି ହେ ।୧୬। ଅମନ କଙ୍କଡ଼ା ରୂପ ପରଂବ୍ରହ୍ମ ହୋଇ । ଗାଈ ଯାହା କହି ପଞ୍ଚଭୂତଟି ବୋଲଇ । ଇନ୍ଦ୍ରଗଣ ହେ । ତା ବତ୍ସା ଅଟନ୍ତି ମନେ ଘେନ ହେ । ୧୭ । ପିମ୍ପୁଡି ପବନ ଶୂଳ ଘେନିଅଛି ତହିଁ । ଦୁଇ ଲୋଚନ ଶେଉଳ ନ ଶିଖେ ତା ଥାଇ । ସେ ହରଣ ହେ ! ସମୁଦ୍ର ଅଗେ ଖେଳଇ ଜାଣ ହେ । ୧୮ । ଖେଳଇ ଯେ ଏହି ଠୂଳଶୂନ୍ୟ ସେ ବୋଲଇ । ଦିବ୍ୟ ଚକ୍ଷୁ ଫେଇ ଦେଖ ଚରିତରେ ସେହି ପରମଟି ହେ । ବନ୍ଧା ହୋଇ ଦେଖ ରହିଅଛି ହେ । ୧୯ । ତାହାଠାରୁ ସର୍ବ ଷଡ଼କ୍ଷର ଯେ ହୁଅଇ । ପୁଣି ଅନ୍ତେ ଯାଇତାହା ଦେହରେ ମିଶଇ । ମହାଶୂନ୍ୟ ହେ । ବ୍ରହ୍ମା ବିଷ୍ଣୁ ଶିବଙ୍କଲେ

ଧ୍ୟାନ ହେ । ୨୦ । ମୁଁ ମୂଢ଼ ପାମର ଅଜ୍ଞାନ ଯେ ଅଟଇ । ସାଧୁ ସନ୍ଥ ପାଦପଦ୍ମେ ଭିକ୍ଷା ମାଗୁଥାଇ । କ୍ଷମଦୋଷ ହେ । ଦୁଃଖୀସୁତଚ୍ଛୁ ଅଚ୍ୟୁତ ଦାସ ହେ । ୨୧ ।



ବାଜଇ ଦେଖ ଶୂନ୍ୟ ବାଜଣା । ଦୃଶ୍ୟ ନୋହେ ନେତ୍ର କର୍ଣ୍ଣେରେ ଶୁଣା । ପଦ । ଶ୍ରୀଗୁରୁ ବଚନ ଅମୂଲ୍ୟ ଜଣା । ଯହିଁ ଭାବ ବୀଜ ହୋଇଛି ବୁଣା । ଜ୍ୟୋତି ରୂପେ ସେହୁ ଦଶେ ଦାଣ୍ଡ ଗୁପ୍ତଦମ୍ଭ କର ନହୁଅ କଣା ।୧। ବଙ୍କନାଳପରେ ଭାଙ୍ଗିବମଣ୍ଡଳ ତହିଁ ପରେ ଦେଖ ଦିବ୍ୟ ପଟଣା । ସହସ୍ର ଦଳରେ ଅନାଦିପୁରୁଷ ଷୋଳ କଳାରୂପେ ଯହିଁ ଘଟଣା ।୨। ନାହିଁ କରତାଳ . ଅବର ଝଂଜାଳ ନ ଥାଇମର୍ଦ୍ଦଳନଥାଇ ବୀଣା । ଅନନ୍ତ ଶଯ୍ୟାରେବିଜେ କରନ୍ତି ଗୁରୁ ପାଖେ ସ୍ୱାରଗୃହ ଅଟଣା ।୩। କୃଷ୍ଣ ପ୍ରିୟାଙ୍କହୃଦପଦ୍ମ ପାଦ ଧ୍ୟାଇ ଗୁରୁ ସେବା କର ନ ହୁଅ କଣା । ଯେବେ ହେବ କଣା ଜାଣ କର୍ମ ଭଣା ବଙ୍କନାଳ ପରେ ଲଗାଅ ଠଣା ।୪।



( ତୁମ୍ଭ ସଙ୍ଗେ ପୀରତି କରି ମୋହନ—ବୃତ୍ତେ )

ଦୟାବହହେ ଦୟାନିଧିଠାକୁର । ଗଲିଣଶରଣତୁମ୍ଭପଦ୍ମପାଦର । । ପଦ । ନିରଞ୍ଜନ ସେନ ନିରକ୍ଷର କପଣ ହେ । ନିରକ୍ଷର କପଣ । ନିରତେ କଳୁଷ ପଙ୍କେ ହେଲି ମଗନ । ନିର୍ଦ୍ଦୟ ନ କହୁଣ,ବାରେ ଜଣାଣ ସେବନ, ଅତି ପତିତ ଜନ, ଭାସି ଯାଉଛି ପୁଣ, ନାଶକର ଅଜ୍ଞାନ ଅନ୍ଧାର । ୧ । ଭାବଗ୍ରାହୀ ଭକ୍ତଜନ ଦୁଃଖ ନାଶନ । ଭାବ ଭାବି ଦବା ଜାଣି ହେଲି ମୁଁ କ୍ଷୀଣ । ତୋର ପବିତ୍ର ନାମ, ହୃଦେ କର ସ୍ମରଣ । ଏ ପାପୀ ପୋଡ଼ା ପ୍ରାଣ, ଶୀତଳ ହେଉପୁଣ ଏହୁ ସ୍ୱଦୟା କର ମୋଠାର । ୨ । ଅର୍ତ୍ତଭଞ୍ଜନ ନିରଞ୍ଜନ ନିସ୍ତାର । ଅଜାମିଳ ମହା ପାପି କଲ ଉଦ୍ଧାର । ଭକତ ହୃଦ

ଛାର, ହେ ଦେବ ଦେବ ହର । ସ୍ତମ୍ଭ ମଧ୍ୟୁ ବାହାର,ହିରଣ୍ୟକୁ ବିଦାର, ପ୍ରହ୍ଲାଦକୁ କଲ ଉଦ୍ଧାର । ୩ । ପତିତ ତାରଣ ପ୍ରଭୁ ପରମ ବ୍ରହ୍ମ । ଶୟନେ ସ୍ୱପନେ ତୁମ୍ଭ ନାମ ସ୍ମରଣ । ତୋହ ଗୁଣ ସୁମରି, ତୋ ନାମ ଗାନକରି, ତୋ ପାଦ ଶିରେ ଧରି,ଅଶ୍ରାବରି ତୋହର । ଦାସ ବାହୁଡ଼ା ପ୍ରଭୁ ଉଦ୍ଧାର । ୪ ।



ନୀଳମଣି, ଧନ ତୋହ ଲାଗି ପଡ଼ିଛୁ ଭ୍ରମେଣି ରେ । ପଦ । ଜର୍ପ ଧୂର୍ପ ଜ୍ୟୋତ ଜ୍ୱାଳା, ତାପରେ ଲାଗିଛୁ ଲୀଳା । ନସୃନସ୍ତ ପିତୁଳା, ମିଶା ତହିଁ ପଞ୍ଚକଳା,ସେରୂପକୁ । କେ ଅଛୁ ବଖାଣି । ସତି ଦରସ ଖାଳଇ, ଖାଲି ଦନ ନ ସରଇ । ଭବାର୍ଣ୍ଣବେ ପଡ଼ିମୁହିଁ,ହସି ଯା'ଉଛୁ ଗୋସାଇଁ । ତୁମ୍ଭନାମ, ହୃଦେ ଗୁଣି ଗୁଣି ହେ ।୨। କେ ଦେବ ତାକୁ ଦେଖାଇ । ତା ପାଦେ ସେବିବି ମୁହିଁ, ପିଣ୍ଡ ପ୍ରାଣ ବିକି ଦେଇ, ତାଙ୍କପାଦପଦ୍ମଧ୍ୟାଇ । ପାଇଥିବି । ତାଙ୍କ ପାଦ ପୂର୍ଣ ହେ । ୩ । ଏ ଅକ୍ଷିରେ ଅଛୁ ସାକ୍ଷୀ, ଜୀବ ଯିବ ତୋତେଦେଖି । ଜୀବ ରହିଲ ଲୁଚେପଶି, ଭାସିଗଲି ମୁଁ ନ ଦେଖି । ଦୀନ ହୀନ;ମଧୁ ଦାସ ଭଣି ହେ । ୪ ।



ତାଳ ଅଡ଼ା ଖେମଟା ।

ଅଭୟ ପାଦ ପଦ୍ମକୁ କର ତୁ ଆଶା । ଦର ନୁହେଁ ଏଜୀବନଅଛି କି ଦଶା । ଘୋଷା । ଅକାରକୁ କରଠାବ,ଇକାରେ ଲଗାଅଭାବ ଜକାରଟି ସର୍ବ ଶୁଭ, ଏ ତିନି ମିଶା ।୧। ତାସୁ ଶୂନ୍ୟ ପରେ ଶୂନ୍ୟ ତଥିପରେ ନିରଞ୍ଜନ, ନାହିଁ ଯହିଁ ବାଇଗ୍ଣଇ ଦରସ ନିଶା । ୨ । ପଞ୍ଚ ମାତ୍ରା ପଞ୍ଚ ସ୍ଥାନ, ପଞ୍ଚ ସ୍ୱରେ କରଗାନ,ପଞ୍ଚାଶଦଳଭେଦଣି ଖେଳାଅ ହଂସା ।୩। ନାମକୁ କର ଭଜନ,ଅନାମେ ପଶ ଶରଣ, ଛାଡ଼େ ଦନ ଅରକ୍ଷିତ ଶୂନ୍ୟ ଭରସା ।୪।



## ରାଗ—ଶୋକ ଭାମୋଦୀ ।

କରୁଣାନିଧାନ ପତିତ-ପାବନ କରୁଛନ୍ତି ଜଣାଣ ଶ୍ରୀ ଗ୍ରମୃରେ । ହେ ଦୀନ-ତାରଣ,ଗଜ-ଉଦ୍ଧାରଣ,ଦୟା ବାରେ କର ଅଧମରେ ଅହେ ଦୀନବନ୍ଧୁ । ଭକତ ବତ୍ସଳ କୃପାସିନ୍ଧୁ । ଶରଣରକ୍ଷଣଦେବ ନାରାୟଣ ନରକ ତାରଣ ଜଗବନ୍ଧୁ ।୧। ଦୀନ ଦାମୋଦର ଦୁଃଖ ବିନାଶିଲ ଗଜକୁ ରଖିଲ ଘୋର ଜଳେ । କୁରୁ ସଭା ତଳେ ଦ୍ରୌପଦୀ ଡାକିଲା କୋଟି ବସ୍ତ୍ରତାକୁ ଦେଲ ହେଳେ । ଅହେ ଜଗନ୍ନାଥ । ବାହୁଥିଲ ଭାବେ ପାର୍ଥରଥ । କରପଢାଇଲ କୁରୁବଳଧ୍ବଂସ ଅଭ କେତେ ୨ ରଥୀଯୂଥ । ଭକ୍ତ ପ୍ରହଲ୍ଲାଦ କଷଣ ନ ସହ ତକ୍ଷଣେ ସ୍ତମ୍ଭ ଜନମ ହେଲ । ହିରଣ୍ୟ ଅସୁର ବିଦାରି ପକାଇ ଅନ୍ତେ ବୈକୁଣ୍ଠେ ସ୍ଥାନ ଦେଲ । ଅହେ ଚକ୍ରପାଣି । ଭକ୍ତବନ୍ଧୁ ନାମ ଅଛି ଶୁଣି । ଭକତ ଜନକୁ ଉଦ୍ଧାରିବା ପାଇଁ ନାନା ଭେକେ ମୀଳଚକ୍ରେ ପୁଣି । ୩ । କଉସ୍ତୁଭ ମଣି ହୃଦରେ ବହିଲ ଶ୍ରୀବତ୍ସଲାଞ୍ଛନ ବକ୍ଷସ୍ଥଳେ । ପାଦେ ପ୍ରହାରିଲେ କୋପେ ଭୃଗୁ ମୁନି ଅଙ୍ଗିଲ ବସି ଶ୍ରୀ ଭୁଜରେ । ଅହେ ବଂଶୀଧର । କୁବୁଜା କୁଜ ସଳଖ କଲ । ଅଭେ ଚକ୍ଷୁଦାନ ଦେଇଛ ସାକ୍ଷାତେ ରଖିଲ ବପଦୁ ଗୋପପୁର ।। ଘୋର ଦୁଃଖ ଗ୍ରଣି ଘୋଟିଅଛୁ ଅସି ପଡିଅଛୁ ବିପଦ ସାଗରେ । କୃପାନାବ ଦେଇ ନ କରିଲେ ପାର ନିନ୍ଦାଲାଜ ହେବ ତନୟରେ । ଅହେ ଶ୍ରୀପୀତାମ୍ବର । ନ ଯିବେ ଶରଣ କେହି ତୋର । ଦୀନବନ୍ଧୁ ଦୀନେ ଦୟା ନ ବହିଲେ କୀର୍ତ୍ତିରେ ଅକୀର୍ତ୍ତି ହେବ ସାର । ଅରତ କାଳରେ ଡାକ ନ ଶୁଣିଲେ କର୍ମ ଅଦର ସହିବ ଦୁଃଖ । ଶଙ୍ଖଚକ୍ର ଗଦା ପଦ୍ମ ଥିବା କରେ ବୃଥା ଅଟେ ତବ ପଦ୍ମମୁଖ । ଅହେ ଗଦାଧର । ଗରବ ଗୃହାର ସେନାଙ୍କର । ନିଜଦାସ ନାଶ ହୋଇଲେ ପୌରଷ ପାଇବ କି ଅବା ହେ ଠାକୁର । ଅତି ଦୀନହୀନ ଶରତ ପାମର ତୁମ୍ଭ ଭୃତ୍ୟପର ସମ ନୁହେ । ଶ୍ରୀଚରଣେ ପଢି ଭାବରେ ଜଣାଏ ରଖ ନ ରଖ ପା ଇଛା ତୁଏ । ଅହେ

ଗିରିଧର । ଦବାନଳି ନାମ ଧାଇ ତୋର। ତୋ ପାଦ ସୁମର ଏ ଭବସାଗରୁ ଦୀନହୀନ ଜନେ ହେବ ପାର । ୭ ।

ମୁକୁନ୍ଦ ମାଧବ ହର ପରମାନନ୍ଦ ମୁରାରୀ । ସେନ ବାରେ ମୋ ଜଣାଣ ମଧୁସୂଦନ କଂସାରୀ ॥ ସତ୍ୟ ଯୁଗରେ ବାମନ ହୋଇଲ ହେ ନିବିକ୍ରମ, ବଳିକି ଛଳି ନେଇ ଦାନ ନେଲ ଛନ୍ଦପୁର । ଦ୍ୱାପରରେ ଗୋପପୁରେ, ଜନ୍ମ କଂସ ବନ୍ଦୀଘରେ, ଛେଲି ମାରି ଗୋପରେ କଂସ ଦେଖି ମଲା ଡ଼ରି । ତ୍ରେତୟାରେ ରାମଚନ୍ଦ୍ର ଅଯୋଧ୍ୟା ଦେଶ ନରେନ୍ଦ୍ର, ବଧିଲ ଯେ ଦଶକନ୍ଧ ବିଭୀଷଣ ରାଜା କରି ॥ ଯା ମହିମା ଅନ୍ତ କରି ନ ପାରିଲେ ତ୍ରିପୁରାରୀ । ମୋହ ଛାରକୁ କର୍ଣ୍ଣିବ ଦ୍ୱିଜ ଅବଢ ବିଶ୍ୱର ।

ରାଧୁଦାସଙ୍କ ଭଜନ ।—

ନୂଆଘର ଦନେ ନଷ୍ଟେ ପୁରୁଣା ହେବ ।
ମାରବ ମାୟା ଲହଡ ଭାଙ୍ଗି ପଡିବ । ପଦ।

ଇଲି ଖାଇଲେଣି ଗଣ୍ଡି-କଡାଡ ଯିବନି ଫିଟି, ଗୁଣିଆ ନ ହେଲେ ଘର ଭାଙ୍ଗି ପଡିବ । ଯାର୍କିଲ ବନ୍ଧରେ ଡାର ଦେଖ ପଡିଲଣି ଟଙ୍କ, ରାଧୁ ବୋଲେ କନ୍ଧ ବାନ୍ଧ ଥୟ ନୋହିବ । ୨ ।

ଛାନ ଏକତାଳ ।

ଫୁଲ ଫୁଟିଛି ଜଗତେ-ଫୁଲର ବାସନା ଏକା ଜାଣନ୍ତି ଭକତେ । ପଦ । ଏକାଷରେ ଫୁଟେ ଫୁଲ ପଞ୍ଚବର୍ଣ୍ଣ ରଙ୍ଗ, ସେ ଫୁଲକୁ ଯେ ଚିହ୍ନଇ ଅଙ୍ଗାମ୍ବର କନ୍ଧ ॥ ସେ ଫୁଲର ନାଂ ଅଟେ ଅପର ଔଷଧି ଯେ ଫୁଲକୁ ଯେତୁ ଚିହ୍ନେ ଲଭଇ ସେ ସନ୍ଧି । ସେ ଫୁଲ ଫୁଟିଛି ଏକ ବୈକୁଣ୍ଠ ମଠରେ । ଶିହ୍ନିଥିଲ ପାସୋରିଲ ଜନମୀ ଜଠରେ । ଶୂନ୍ୟରେ ଫୁଟିଛି ଫୁଲ ତୋଳି ଯେ ନ ଅସେ । ଅତ୍ୟନ୍ତ ସୌରଭ ଫୁଲ ଅଘ୍ରାଣେ ନ ବାସେ । ସେ ଫୁଲର ଅଦ ଅନ୍ତ ନ ଜାଣନ୍ତି କେହି । ରାମଦାସ ଭାବୁଛନ୍ତି ନୟନ ମୁଦିକି ।

ପତିତପାବନ ବାନା ଅଛି ଭେତେ ବେଳକୁ ।
ଭାସିଗଲି ଭବଜଳେ ନାବ ଦିଅ କୂଳକୁ । ପଦ ।

ରୋପିବାର ବୃକ୍ଷଗୋଟି, କାଟୁଅଛ ମୂଳକୁ । ଜନପୁରେ ଅପକୀର୍ତ୍ତି ହେବ ଅଦମୂଳକୁ । ୧ । ଦୂରେ ଥାଇ ଡାକ ଦେଲେ, ଡେରଥାଅ କର୍ଣ୍ଣକୁ । କାକୁଣ୍ଠରେ ନ ଶୁଣିଲ ମୋ କର୍ମ ଅବଳକୁ । ୨ । ଲକ୍ଷେ ଯୋଜନରେ ଗଜ ଡାକଦେଲା ତୁମ୍ଭଙ୍କୁ । ଚକ୍ରପେଶି ନକ୍ର ନାଶି ଉଦ୍ଧାରିଲ ତାହାଙ୍କୁ । ୩ । ନକ୍ଷତ୍ର ଦଣ୍ଡଭି ଜଳେ, ସନ୍ଧ୍ୟାଧୂପ ବେଳକୁ । ଲମ୍ବିଛୁ ଦୟ୍ନଶାମାଳ ପାଦପଦ୍ମ ତଳକୁ । ୪ । ଯୋଗିଜନ ମାନେ ହୃଦେ ଧ୍ୟାଉଛନ୍ତି ଯାହାକୁ । ଭଣିଲେ ବୀରକିଶୋର ପାସୋରିଲ ଅମ୍ଭଙ୍କୁ । ୫ ।



ମାନ ଉଦ୍ଧାରଣ କର ହେ କାରଣ ଶରଣ ମୁଁ ତୁମ୍ଭ ପାଦତଳେ ଅନାଥର ନାଥ, ନୀଳଗିରିନାଥ ଜଗନ୍ନାଥ ନାମ ନୀଳାଚଳେ । ଘୋର ମହୋଦଧି କୂଳେ କଳ୍ପ ବଟମୂଳେ ବିଜେ କରଅଛ ବଡ଼ ଦେଉଳେ । ଲକ୍ଷେ ଯୋଜନରେ ଗଜ ଡାକଦେଲା ତା ଡାକ ଶୁଣିଲ ପଣା-ଖେଳେ । ମାରକଣ୍ଡ ଋଷି ଯାଉଥିଲେ ଭାସି, ତାଙ୍କୁ ରକ୍ଷାକଲ ବାହୁବଳେ, ଅଷ୍ଟମଲ୍ଲ ସଙ୍ଗେ କଂସକୁ ନାଶିଲ କ୍ରୀଡ଼ାକଲ ଗୋପ-ବାଳ ମେଳେ । କିସ୍କିନ୍ଧ୍ୟାକୁ ଗଲ ବାଳୀ ବିନାଶିଲ ବନ୍ଧ ବାନ୍ଧିଲ ସେ ସିନ୍ଧୁଜଳେ । ଲଙ୍କାରେ ରାବଣ ବଧିଲ ଅପଣ ଜନକ-ନନ୍ଦନୀ ସୀତା ଛଳେ । ୭ । ପାଣ୍ଡବଙ୍କ ହୁତେ ହସ୍ତିନାକୁ ଗଲ ଭୋଜନ କଲ ବିଦୁର ଘରେ । କୁରୁ ସଭାତଳେ ଦ୍ରୌପଦୀ ଡାକିଲା କୋଟି ବସ୍ତ୍ର ତାକୁ ଦେଲ ହେଳେ । ବନ ପୋଡ଼ି କାଳେ ଘୋର ଦାବାନଳେ ରକ୍ଷା କରିଛ ହେ ବ୍ରଜବାଳେ । କହେ ଉପେନ୍ଦ୍ର ଭବକୂଳଚନ୍ଦ୍ର, କାଡ୍ୟା ଶରଣ ସେ ପାଦତଳେ । ୫ ।



## ଚଣ୍ତୀ ଦାସ ।

ଭଜମନ ଜଗନ୍ନାଥଙ୍କୁ, ନୀଳାଚଳେ ଦାରୁ ବ୍ରହ୍ମଙ୍କୁ । ରତ୍ନ-ସିଂହାସନେ ବିଜେ କରିଛନ୍ତି, ତାଙ୍କୁ ଧ୍ୟାନକର ଭବ ତରିବାକୁ । ପଦ । ଭଜି ଭୁଷଣ୍ଡ ହୋଇଲେ ଅମର, ଧ୍ୟାଉ ଅଛନ୍ତି ବରୁଣ କୁବେର । ଶଚିପତି ଯାର ପାଦ ନିତ୍ୟେ ଚିନ୍ତି ବାସବ ଧ୍ୟାଉଛି ଯାର ପାଦକୁ । ବେଦବ୍ୟାସ ଆଦି ଶୁକ ସନକାଦି ହୃଦେ ଧ୍ୟାଉଛନ୍ତି ଯେଉଁ ପାଦକୁ । ବ୍ରହ୍ମା ବେଦକର ଚିନ୍ତି ଯା ପଦ୍ମର ପଞ୍ଚାନନ ପୂଜୁଛନ୍ତି ଯାହାଙ୍କୁ । ୨ । ଚନ୍ଦ୍ର ଦିବାକର ଅଷ୍ଟ ଦିଗପାଳ ଧ୍ୟାଉଛନ୍ତି ହୃଦେ ଯାର ପାଦକୁ । ସ୍ୱର୍ଗ ମର୍ତ୍ତ୍ୟଆଦି ପାତାଳ ବୈକୁଣ୍ଠ ରହିଅଛି ଯାର ଅଙ୍ଗ ପଦକୁ । ଗଙ୍ଗା ଯା ପଦ୍ମର ସେବି ନିରନ୍ତର, ଚପଳା ଧ୍ୟାଉଛି ଯାର ରୂପକୁ । ଯା ରୂପ ଦର୍ଶନ ପାତକ ଖଣ୍ଡନ ବାକ୍ୟଦେବୀ ଭଣେ ଯେଉଁ ନାମକୁ । ଯାର ନାମ ସୁଧା ପିଇଣ ବସୁଧା, ରହିଅଛି ସେହୁ ସତ୍ୟ ପଦକୁ । ସେ ସତ୍ୟଙ୍କୁ ପୁଣ ଚନ୍ଦ୍ରମା ଅରୁଣ ଚଳାଚଳ ହୋନ୍ତି ସବ ଦିନକୁ । ଯେଉଁ ପାଦପଦ୍ମ ଭାବି ସାଧୁବୃନ୍ଦ ଭ୍ରମୁଛନ୍ତି ଦେଶ ଧାମ ଦ୍ୱାରକୁ । ସେ ପାଦକୁ ଅଶ ଭାବି ଚଣ୍ଡୀ ଦାସ, ନିତ୍ୟେ ପ୍ରଣମଇ ଭ୍ରକପୂର୍ବକୁ । ୬ ।



ମନ ହରି ନ ଭଜୁ କାହିଁପାଇଁକି । ଦିନେ ବାନ୍ଧ ନେବ ଜମ୍ବୁ-ସାଇଁକି । ପଦ । ଧନଦାରା ସୁତ ତୋର ସବୁ ମିଛଟି, ମଲେ କେଳେ କାନ୍ଦୁଥିବେ ଶୋକକରିଟି । ଛଖଣ୍ଡି କାଠପରେ, ଶୁଆଇବେ ତହିଁରେ ସେମାନେ ପିବେ ପାଞ୍ଚ ସାତଟି । ଯେତେବେଳେ ସେମାନେ ପିବେ ସକ୍ତ ତୋ'ତେଟି । ଗୋମସ୍ତଙ୍କୁ ଗୋଲ ଦିଅ, ଥିବେ ପଛେଟି । ଶମଶାନକୁ ନେଇ, ଯୁଇ ଦେବେ ଲଗାଇ, ମୁଖରେ ତୋର ଅଗ୍ନି ଦେବେଟି । ୨ । ଖୁଣ୍ଟାଡାଙ୍ଗ ସେମାନେ ତୋତେ ଟେଣ୍ଡି ଥିବେଟି ଚଡ଼ ବଡ଼ ଡାକୁ ଥିବ ଗଣ୍ଠି ହାଡ଼ଟି । ଅଗ୍ନି ମାଂସକୁ ଖାଇ, ଶବ

ଟିବ ମିଳାଇ । କବଳା ଖଣ୍ଡେ ଚଣ୍ଡୀ ପାଇଛି ।୩। ମ୍ନାହାନ କରଣ ଶୁଚୀମନ୍ତ ହୋଇଛି । ଘରକୁ ଆସିଣ ନିର୍ମାଲ୍ୟକୁ ଖାଇଛି । ଶୀତଳ ଜଳ ଖାଇ, ମାଲ୍ ଯିବେ ପଳାଇ । ବନ୍ଧୁ କୁଟୁମ୍ବ ଯାବୁ ଥିବେଛି । ୪ । ବାରଦ୍ୱାନେ କିମ୍ବା ଧର୍ମ ସବୁ ସାଧିଛି । ଯେ ଯାହା ଘରକୁ ଯିବେ ବିଦା ହୋଇଛି । ଚଣ୍ଡୀ ଦାସ କହଇ, ହର ଭଜନରେ ଯାଇ । ନାହିଁ ତା ବିନୁ ଅନ୍ୟ ଗତିଛି । ୫ ।



( ଢାଳ ଅଡ଼ା ଖେମଟା )

କହେ ମନ ଚଇତନ, ଖୋଜ କର ଦରଶନ, ଗୁରୁଙ୍କ ଗୁପତ ଜ୍ଞାନ ଘୋଟିଛୁ ଅଶେଷ ବ୍ରହ୍ମ, ଜପଧେଗିବ, କାଙ୍ଗ୍ସ ମନ୍ତ୍ରକୁ ଅସେ ଫେରି କର । ୧ । ଚନ୍ଦ୍ର ସୂର୍ଯ୍ୟ ବନ୍ଧକର ଷଡଚକ୍ରରେ କିହର, ଜୀବ ପରମ ବିଗ୍ରହ, ବଙ୍କନାଳେ ଗ୍ରୈରଧର । ନିତ୍ୟସ୍ଥଳ,ଅଷ୍ଟସଖି ସେବା ଦେଖ ନିରନ୍ତର । ୨ । ଠେକ ଠାକଲେ ପାଇବୁ ମୂଳ ବ୍ରହ୍ମଙ୍କ ଚିହ୍ନବୁ । ଡ଼ୋଳା ପିଙ୍ଗଳା ସାଧିବୁ ତାଙ୍କୁଣି ଅଣ୍ଟ କରିବୁ । ଅଣାକାର, ଓଁକାର ମକାର ବେନି ହେତୁକର । ୩ । ତିନିଙ୍କି ଏକ କରିବୁ ଅକାରେ ନିମଗ୍ନେ ଥିବୁ । ଦୁଇଦଳ ମଧ୍ୟେ ଯିବୁ ଧୀର ସଧୀରେ ଗୃହିଁବୁ । ମାଳଗିବ, ଚତୁର୍ଦ୍ଧା ମୂରତି ସନ୍ତି ବଢ଼େଇକର ।୪। ପାଦପଦ୍ମେ କର ଆଶ, ପୂଜା ବନ୍ଦେ କର ବାସ,ବ୍ରହ୍ମା ଶିବ ଯାର ଦାସ ଭଜି ନ ପାଇଲେ ଲେଶ । ମଧୁପାନେ, ପିଇ ଭକ୍ତ ହୋଇଲ ହେଲେ ହତଜ୍ଞାନେ । ୫ । ଜାଣି ନାରଦ ପଇଲେ, ରସେ ବ୍ରଜ ବାଳୀଗୁଲେ । ନବଧାଭକ୍ତି ଲଭିଲେ ବୃନ୍ଦାବନେ ବାସକଲେ । ସୁର ନର, ସୁହଂସା ଭଜ.. ..ନ ହେତୁକର । ୬ । ସୁମନ ମୋ ବୋଲିକର ସାଧୁଙ୍କ ସଙ୍ଗକୁ ଧର । ହବେ ଦୁଃଖ ତୋହର, କ୍ଷମାନିଧିଙ୍କ ପଯ୍ୟର । ଛଠକରେ, ଗୁର ଜଗା ଭଜୁଅଛୁ ନିକଟରେ । ୭ ।



ରାଗ-ସୋମ, ତାଳ-ରୂପ ଝୁଲା ।

ଥରେ ପ୍ରଭୁ କରା ଶ୍ରୀମୁଖ, କାଳ ପାଇ ଭଜି ନ ଗଲା ଦୁଃଖ । ଘୋଷା । କି ଅବା ଶ୍ରୀମୁଖରେ ଜଣାଇବି ମୁହିଁ ସାକ୍ଷାତେ ମୋ' ଦୀନ ଅବସ୍ଥା ଦେଖ । ତେଣୁ ଶ୍ରୀମୁଖକୃପାରୁ ନ ପାରଇ ଖଣ୍ଡେ ମାତ୍ରକ ନ ଥିଲା ଭେକ । ସାଧୁଙ୍କ ଜଞ୍ଜାଳ କୁଟୁମ୍ବଙ୍କ ଗୋଳ ହୃଦୟ ବେଦନା ସବୁଁ ଅଧିକ । ଚଳବର୍ଗ ଦାଣ୍ଡି ଅଶ୍ରେ କରି ମୁଁ ଯେ ବାହୁଁରେ ଅଳ ନ ପାଇଲି ସୁଖ । ୨ । ମନ ମଧ୍ୟେ ମୋର ହରଷ ନ ଥାଇ ହୃଦୟ ମଧ୍ୟରେ ବଡ଼ ବିମୁଖ । ତା' ଅଗେ କହିବି ତେ କଷ୍ଟ ଫେଡିବ ସଂସାରେ ମୋ ପରି ନାହିଁ କିରେଖ । ୩ । ବାଞ୍ଛକଳ୍ପ ପରି ମନ ଭ୍ରମୁଅଛି କ୍ଷଣେ ନ ରହିଲି ତୁମ୍ଭର ପାଖ । କହେ ବନମାଳୀ ଶଙ୍ଖରେ ପୂରଇ ଚକ୍ର ଜିହ୍ୱାଙ୍କଣ ଘୋଡ଼ାଇ ରଖ । ୪ ।



ତାଳ—ଏକତାଳି ।

ଗୁଲ୍ଲେ ଶୂନ୍ୟେ ଶବଦ, ଅନୁମାନ ଶବ୍ଦେ ଭେଦ, ଅକଳନ! ବାଗନିଧି ନାମ ମହିମା ଅଗାଧ । ଗମ୍ୟ ନାହିଁ ଗୁରୁ ଧର୍ମ, ଜ୍ୟୋତି ଜ୍ୱାଳା ଜର୍ମ ଧର୍ମ, ବ୍ରହ୍ମା ବିଷ୍ଣୁ, ଶିବ ଭ୍ରମ ଏମନ୍ତ ସେ ଯେଉଁ ପଦ । ଯେ ରାମଚନ୍ଦ୍ର ଅନନ୍ତ, କୃଷ୍ଣଚନ୍ଦ୍ର ଜଗନ୍ନାଥ, ଗୁରୁ-ଯୁଗେ ଅବତାର, ହୋଇଣ ପାରବେ ସିଦ୍ଧ ରଜ, ଯଜ୍ଞ, ଶାପାର୍ଥବ, ହ୍ରୀଁ ଶ୍ରୀଁ କ୍ଲୀଁ ସ୍ୱର, ବଗ, ଅକ୍ଷରରେ ଭ୍ରମି କ୍ଲେଉ ନ ପାଇଲେ ସ୍ୱାଦ । ପୃଥ୍ୱୀ ଅପ ତେଜ ବାୟୁ, ଜ୍ୟୋତି ତେଜ କଳାବହ, ଚନ୍ଦ୍ର ସୂର୍ଯ୍ୟ ଭେଦେ ହୋଇ ନ ପାଇଲେ ଅନ୍ତଆଦ୍ୟ । ଛପନକୋଟି ଯେ ଜୀବ, ଭବ ନ ପାରିଲେ ଠାବ, ମୁନି ତପସ୍ୟାରେ ବସି, ମନରେ ହେଲେ ସ୍ତବଧ । ଅବ୍ୟକ୍ତ ବ୍ରହ୍ମ ଯେହୁ, ରୂପ ରେଖ ତାର ନାହିଁ । କହେ ଭୀମ ଅରକ୍ଷିତ ଅନାମରେ ଯାଇ ଭେଦ ।



## ମରୁଆ ଫୁଲ ଚଉତିଶା ।

ବହୁଅଛି ମନ ଶୁଣ । ଶୀଘ୍ରକାଳେ ପଣି ଭବ ଦର୍ଶନ ଲୋ । ମରୁଆ ଫୁଲ । ଗୃହରେ ଗଙ୍ଗା ସ୍ନାହାନ ଲୋ । ୧ । ଘଟ ଭ ନୃହଇ ଶବ । ଉଦେ ଥାଇଁ ଥାଇଁ ନାସକୁ ଧଉ ଲୋ । ମରୁଆ ଫୁଲ । ଚକ୍ରଧରଙ୍କୁ ସ୍ମରଣ ଲୋ । ୨ । ଗ୍ଲଡିଲେ ଅସିବ ନାହିଁ । ଜୀବକୁ ଘେନି ପରମ ଚଳଇ ଲୋ । ମରୁଆ ଫୁଲ । ଝୁଣ୍ଡ ପଡିବ ଭୋ ଦେହୀ ଲୋ । ୩ । ନିରଞ୍ଜନ ନିର୍ବଦେହୀ । ଟେଷ୍ଣ ବାହାରେ ବ ଦେବତା ବହି ଲୋ । ମରୁଆ ଫୁଲ । ଠକ ଦ୍ୱାରକା ଭହଇ ଲୋ ॥ ଡିମ୍ବ ଫୁଟି ଛୁଆ ଗଲା ! ଢାଙ୍କୁଣି ଏଢାନ୍ତେ ପଡ ରହିଲା ଲୋ । ମରୁଆ ଫୁଲ । ଅଣାକାରରେ ମିଶିଲା ଲୋ । ୫ । ତେଲ ଗିବ ଶିଖେ ବହ । ଥେଣ୍ଣ ପାଠଣା ଭ ବହିବ ନାହିଁ ଲୋ । ମରୁଆ ଫୁଲ । ଦହିବେ ଅନଳେ ନେଇ ଲୋ । ୬ । ଧ୍ୱନିରୁ ଧ୍ୱନି ହୋଇଲା, ନିଶବଦ ଘରୁ ଶବଦ ହେଲା ଲୋ । ମରୁଆ ଫୁଲ । ପଶ୍ଚିମେ ଯାଇ ନଇଲା ଲୋ । ୭ । ଫୁଙ୍କା ବନ୍ଧ ପରେ ବହି । ବନା ବାରମାତ୍ରା ବହିବ ନାହିଁ ଲୋ । ମରୁଆଫୁଲ । ଭଣ୍ଡ ଦ୍ୱାରକା ଭହଇ ଲୋ । ମଲା ମଲା ବୋଲୁ ଅଛୁ । ଜଗତକୁ ମଲା ଖାଇ ଯାଇଛି ଲୋ । ମରୁଆ ଫୁଲ । ତୁମେ ତାର ନ ଠେଲୁଛୁ ଲୋ । ୯ । ଲୋଭ ମୋହ ମାୟା ଯଲା । ବିଂହନ୍ତା ପୁରୁଷ ଶୂନ୍ୟେ ବହିଲା ଲୋ । ମରୁଆ ଫୁଲ । ଶୂନ୍ୟରେ ଶୂନ୍ୟ ମିଶିଲା । ୧୦ । ଶୂନ୍ୟେ ଶୂନ୍ୟେ ଭବ ବାସ । ଶୂନ୍ୟରେ ବିଜୟ ଶୂନ୍ୟ ପୁରୁଷ ଲୋ । ମରୁଆ ଫୁଲ । ଶୂନ୍ୟରେ ଅବନା ହଂସ ଲୋ । ୧୧ । ଛଇତ୍ରେ ଛନ୍ଦା ଅଷର । ଛନ୍ଦା ଚଉତିଶା ଭଲେ ପ୍ରଗ୍ଟର ଲୋ । ମରୁଆ ଫୁଲ । ଗ୍ଲବ ଦ୍ୱାରକା ପାମର ଲୋ । ୧୨ ।



## ଅଲେଖ ଭଜନ ।

ଲଗିଛୁ ବ୍ରହ୍ମ ଅଙ୍ଗ ଅଲେଖ କୁଣ୍ଡେ ।
ଧାପ ଦେଉଅଛୁ ଏକୋଇଶ ବ୍ରହ୍ମାଣ୍ଡେ । ଘୋଷା ।

ବ୍ରହ୍ମ ବେଳି ଭାବ କଲ୍, ଅଧେ ବ୍ରହ୍ମାଣ୍ଡ ରଚିଲ । ଗୁପତ ହୋଇ ରହିଛୁ ଅଦ୍ଭୁତ ଖଣ୍ଡେ । ୧ । ଏକବ୍ରହ୍ମରୂପ ଗୋଟି ଗୃହାଁ ଚକ୍ଷୁ ଯିବ ଫୁଟି । ଯାହା ମୁଁ ଦେଖିଛୁ କସ କହିବ ତୁଣ୍ଡେ । ୨ । କାଷ୍ଠୁର ପାଉଁଶ ନାହିଁ, ଧୂମ ଧୂଆଁ ନ ଦିଶଇ । ଗୁଡ଼ ଘୃତ ନାହିଁ ହୁତାଶନ ପ୍ରଚଣ୍ଡେ । ହସ୍ତ ମାରି ଦେବ କହି, ଲଲାଟପଟରୁ ଗୃହିଁ; ଲେଖା ହୋଇଅଛୁ ଯାହା ଦେଖ ସେମୁଣ୍ଡେ ।୪। ସ୍ୱୟଂ ବ୍ରହ୍ମ ଏକରୂପ ସକଳ ଜୀବଙ୍କ ବାପ, ଅସ୍ଥାନ ସ୍ଥଳରେ ସେବା ଶକତି ଛୁଡ଼େ ।୫। ବସି ଅଛନ୍ତି ଅନାଦି, ଶୂନ୍ୟ ଅସନ ସମାଧି । ଅଣ ଶବଦ ପ୍ରକାଶ ଯମନ ଦାଣ୍ଡେ । ୬ । ହଜି ଯାଉଅଛୁ ସେନା, ଉଦେ କରୁଅ ବାସନା । ଯେବଣ ସୁକୃତ ଅଛୁ କରମକାଣ୍ଡେ । ନିଗମପଥ ଅଦର, ଅସାଧନରେ ସୁମର । ପଡବନ୍ଧେ ଧର ଜୀବ ଥାଉ ଏ ଖଣ୍ଡେ ।୭। ଯେଉଁ ଜନ ଭକ୍ତ ତାର, ସେହୁ ଜାଣେ ବ୍ରହ୍ମସାର । ଶ୍ରୀ ପାଦ କଳରେ ଶିର କମଳ ଲୁଣ୍ଡେ । ୮ । ଅକ୍ଷୟ ବ୍ରହ୍ମରେ ମିଶି, ଏକରୂପ ପ୍ରାପ୍ତ ଦିଶି, ତାକୁ କେହି ସରି ନୋହେ ତନି ବ୍ରହ୍ମାଣ୍ଡେ । ଯିବନ୍ତି ବୃକ୍ଷ ବକଳ, ନେତ୍ରେ ଦେଖନ୍ତି ସକଳ, ଅନ୍ତଥି ପ୍ରାପ୍ତ ଭୁଲନ୍ତି ଧରମଦାଣ୍ଡେ । ୧୦ ।



ତାଳ—ଏକତାଳ, ଅଡ଼ାଖେମଟା ।

ଭଜମନ ଏକାକ୍ଷର ଶୂନ୍ୟ ଭଜନ ।
ମହାଶୂନ୍ୟ ଠୁଳ ବ୍ରହ୍ମେ ଲଗାଅ ଧ୍ୟାନ । ପଦ ।

ବ୍ରହ୍ମାଦି ତେତିଶ ଦେବ ନ ପାନ୍ତି ତହିଁର ଭାବ, ଜାଣି ତାହା ସଦାଶିବ କରନ୍ତି ପାନ । ୧ । ଓଲଟ ସମୀର ଟେକ । ଅମନ ମନ୍ଦରେ ରଖ, ପାଞ୍ଚନାରୀଙ୍କୁ ପୋଖ ନିଗମସ୍ଥାନ । ୨ । ଝୁରୁଛୁ

ତ୍ରିବେଣୀ ଝର, ଝରନ୍ତି କେଡ଼େ ମଧୁର, ଝରଣିରେ ଛନ୍ଦ ହର ଯୋଗ ଲାଗିଣ । ୩ । ସନ୍ଥ ସାଧୁ ସଙ୍ଗେ ବସ, ପାଇବ ପରମରସ, ଗୀତେ କହେ ରଘୁ ଦାସ ମୂଢ଼ ଅଜ୍ଞାନ । ୪ ।



ତାଳ—ପତ୍ର ।

ପ୍ରିୟ ସଜନି ଗୋ ଯାହା ମୁଁ ଦେଖିଲି ଆଜ ।

କହନ୍ତି ଲୋକର ମନକୁ ନ ଆସେ ଶୁଣିଲି ଲୋକକୁ ଲାଜ । ପଦ । ପୁରୁଷ ହୋଇଣ ଅଣ୍ଡ ତାର ନାହିଁ ସ୍ତ୍ରିରୀ ହୋଇ ନାହିଁ ଯୋନି । ଅତ ହରଷରେ ସହବାସ କରନ୍ତି ନାହିଁ ଦିବସ ରଜନୀ । ୧ । ଅତ ହରଷରେ ସହବାସ ଅନ୍ତରେ ରଜବୀର୍ଯ୍ୟ ଯହିଁ ନାହିଁ; କଛୁଦନପରେ ପୁତ୍ର ଜନ୍ମହେଲା କାହେ କୁଅଁ କୁଅଁ ହୋଇ । ୨ । ସ୍ତନ ନାହିଁ ପୁତ୍ର କ୍ଷୀର ଖାଉଅଛୁ ଭୃଷା ଭୃଷେ ନାହିଁ ମୁଖ । କେଉଁଠାରେ ରହି ହାଟ ବସାଇଛୁ କାହିଁରେ ହୋଇଛୁ ଚୋପ୍ୟ । ୩ । ନେତ୍ର ନାହିଁ ତ୍ରିଭୁବନ ଦେଖୁଅଛୁ ଜିହ୍ବା ନାହିଁ ସ୍ଵାଦୁ ମଣେ । ନାସା ନାହିଁ ସବୁ ବାସନା ଘେନୁଛୁ କର୍ଣ୍ଣ ନାହିଁ ସବୁ ଶୁଣେ । ୪ । ସୁଜନ-ମାନଙ୍କ ଚରଣ ସେବିଣ ଧର ପଚ୍ଛୁଛୁ ମୁହିଁ । ଗୀତ ଗୂଢ଼ପଦ ଅର୍ଥ କରଦେବ ଭଣେ ଗୋରେଖ ଗୋସାଇଁ । ୫ ।



( ଗଣନାଥ ମୋ ଅରତ ନାଶ କରହେ ଝିଂଟି—ରୂପକ )

ଜଗନ୍ନାଥ ମୋ ଆରତ କାହିଁ ପାଇଁକି ନ ଶୁଣ ।

କାହାକୁ ନ ତାରଅଛ ମୋ ବେଳକୁ ନିଦାରୁଣ । ଘୋଷା ।

ଲକ୍ଷେ ଯୋଜନର ଜଳେ ଡାକ ଦେଲା ସେ ବାରଣ, ତୁରତରେ ଚକ୍ର ପେଶି ପ୍ରଭୁ ନେଲ ନକ୍ର ପ୍ରାଣ । ୧ । ବନେ ଚିନ୍ତିଲା ମୃଗୁଣୀ ତା ଜାଣିଲ ଅର୍ତ୍ତତ୍ରାଣ । ଘନେ ଘୋର ସଙ୍କଟରୁ ତାକୁ କଲ ପରିତ୍ରାଣ । ୨ । ଅର୍ଜ୍ଜେ ଡାକିଲା ଦ୍ରୌପଦୀ କୁରୁ ସଭାର ଭଳେଣି । କୋଟିବସ୍ତ୍ର ଦେଇ କଲ ତାଙ୍କ ଲଜ୍ଜା ନିବାରଣ । ୩ । ପ୍ରହଲ୍ଲାଦ

ଛଳେ ହିରଣ୍ୟକୁ କଲ ବିଦାରଣ । ସ୍ୱର୍ଗ ଇନ୍ଦ୍ର ପଦ ଦେଇ ଫେଡିଅଛ ତା କଷଣ । ୪ । ସାବତ ଜନନୀ ଛଳେ ଧ୍ରୁବ ଶନ୍ତା କରନ୍ତେଣ । ଶୂନ୍ୟ ମଣ୍ଡଳରେ ତାକୁ ପ୍ରଭୁ ଦେଲ ଦିବ୍ୟସ୍ଥାନ । ୫ । ଅଜାମିଳ ନାମେ ଥିଲା ମହାପାତକୀ ବ୍ରାହ୍ମଣ, ଅନ୍ତକାଳେ ତବନାମ ଧରି ଗଲା ସ୍ୱର୍ଗସ୍ଥାନ ।୬। ସୁଦାମା ଦାରିଦ୍ର୍ୟ ଦ୍ୱିଜ ଚିନ୍ତିଲା ହେ ନାରାୟଣ । ଐଶ୍ୱର୍ଯ୍ୟ ସମ୍ପଦେ ତାକୁ କରି ଦେଲେ ପରିପୂର୍ଣ୍ଣ । ସୁଗ୍ରୀ ସଙ୍ଗେ ମିତ୍ର ହୋଇ ବାଳୀ ବଧିଲ ଅପଣ । କିଷ୍କିନ୍ଧାରେ ରାଜା କରାଇଲ ତାକୁ ତତକ୍ଷଣ । ୮ । ଲଙ୍କାଗଡ଼ରେ ଶରଣ ପଶିଲାକ ବିଭୀଷଣ । ଭୁଞ୍ଜିଲା ଲଙ୍କା ବିଭୂତି ପ୍ରଭୁ ତବ ପ୍ରସାଦେଣ । ୯ । ମୁଁ ଅଧମ ମୂଢ଼ ମତି ପ୍ରଭୁ ତୁମ୍ଭେ କି ନ ଜାଣ । ହେଳୁନାହିଁ ଯେଣୁ ସନ୍ଥୁଅଛୁ ବେଣୁଧର ଟାଣ । ୧୦ ।

——:o:——

ତାଳ—ଏକତାଳି ।

ରମାରମଣ ହେ । କ୍ଷମାକର ମୋ ବିଚାର

ତୁମ୍ଭେ ନ ରଖିଲେ ଅହେ ଦୀନବନ୍ଧୁ ଏ ଇତ୍ୟ ହୋଇବ ହିଁ ଛାର । ଘୋଷା । ଅଜ କେ ମୋ ସାହା ଅଛୁ ବଡ଼ବାହା ଏ କଷ୍ଟରୁ କରିବ ଉଦ୍ଧାର । ଶକଟ-ଭଞ୍ଜନ ଗରବ-ଗଞ୍ଜନ ଏ ଭବାର୍ଣ୍ଣବ-କରୁ କର ପାର । ୧ । ସୁଦର୍ଶନ ଚକ୍ର ଘୋଡ଼ାଇ ରଖିଲେ କି କରି ପାରିବ ଗ୍ରହ ଛାର । ତବ ବିନା ଦୁଃଖ ହରିବାକୁ ଏ ସଂସାର କାହାକୁ ନ କରେ ଗୀର । ୨ । ଅରତେ ଡାକୁଛି ଅର୍ତ୍ତିଧ୍ୱଂସନଙ୍କୁ କିପାଇଁ କଷଣ ନ ନିବାର । ଯେବେ କିଛି ଅପରାଧ ଅଛି ପ୍ରଭୁ ନିଜ କରଯୁଗରେ ସଂହାର । ଏ ଦୁଷ୍ଟ କଥାରୁ କଥାଏ କି ହେତୁ ନ କରୁଛ କଳୁଷ୍ଟ ଉଦ୍ଧାର । କହେ ବେଣୁଧର ମୋହପଦ ଢଙ୍କେ ଖୋଜିଲେ ନ ଥିବେ ଦୁରଗୃହ । ୧ ।

———

ତାଳ—ଅଠତାଳ ପଡ଼ ।

ସଧେକୃଷ୍ଣ ସଧେକୃଷ୍ଣ ସଧେକୃଷ୍ଣ ରଟରେ ।
କେତେଦନ ରହବ ତୋ ମାଟିପିଣ୍ଡ ଘଟରେ । ପଦ ।

ଧନ ଦାସ ସୁତ ଦେଖି ମନ କରୁ ମୋଟ ରେ । ମୋର୨ ହୋଇ ଘୁଞ୍ଚୁ ଅଛୁ ଧର୍ମବାଟରେ । ଯମୁନାତଟ ନିକଟ ଅଟେ ବଂଶୀବଟ ରେ । ତ୍ରିଭଙ୍ଗି ଭଙ୍ଗିମାଛନ୍ଦେ ଭଜ ନନ୍ଦଗୃହ ରେ । ୨ । ହରେକୃଷ୍ଣ ମହାମନ୍ତ୍ର ଅନୁକ୍ଷଣେ ରଟ ରେ, ସ୍ୱମ ନାମ ଖଣ୍ଡାଇବ ପାପ ତାପ କାଟ ରେ । ସ୍ତବେ ଭାଗବତ ବାଣୀ ଶୁଣ କର୍ଣ୍ଣପୁଟ ରେ । ଭବରେ ଭଜିଲେ ଏହା ଅବଧୂତଗୃହ ରେ । ୪ ।



ତାଳ—ଖେମଟା ।

ବୋହୂ ଗୃହ ନ ଜାଣଇ ଗୋ ପାଦ କରୁଥାଇ ବଙ୍କା ।
ଯେଉଁଦନ ବୋହୂ ସଳଖି ଗୃହର ଘରେ ପଡଇବ ଡ଼ଙ୍କା । ପଦ ।

ଯେଉଁଦନ ବୋହୂ ବାପଘରଠାରୁ ଅଇଲା ଶ୍ୱଶୁର ଘରକୁ । ଅପଣା ପତିର ସଙ୍ଗେ ସଙ୍ଗନାହିଁ ରସରେ ରସାଏ ପରକୁ । ୧ । ପାଞ୍ଚ ଭଲ ଲୋକ ବୁଝାଇ କହିଲେ ନ ବୁଝିଲା ବୋହୂ ଢ଼ାଳେ । ଅନ୍ନ ପାଣି ବୋହୂ କିଛି ନ ଖାଇଣ ରହୁଛି ଶୂନ୍ୟ ଅହାରେ । ୨ । ଦଶଶ ନଣନ୍ଦ ଜଞ୍ଜାଳ କରନ୍ତି ବୋହୂ ମୋର ବାଳୁଅଳ । ବୋହୂ ଦୁରୁଦଣ୍ଡୀ ସହ ନ ପାରଇ ଭୂଲଇ ପଡଣା ଓଳ । ୩ । ବୋହୂ ଗୋଟିକ ମୁଁ କରଅଣିଅଛୁ ବାଜନା ଘରର ଝିଅ । ବାଈକରକଟୀ ନୂଦଇ ଲମ୍ପଟି ବୋହୂ ଅଟେ ତନାପୁଅ । ୪ । ପୁଅ ବୋହୂ ଦୁହେଁ ଏକଜ ହୋଇଲେ ଚତୁର୍ବର୍ଗ ଫଳ ପାଇ । ରଘୁନାଥ ଦାସ ଭରସା କରଛି ବୋହୂକୁ ଭେଟିବା ପାଇଁ । ୫ ।



ରାଗ—ପଞ୍ଚ ।

ହଂସ ଖେଳୁଛିରେ କଳପ ବଟରେ ରହି ।
ହଂସ ଉଡଗଲେ ପିଣ୍ଡ ପଡଥିବ ଡ଼ାକିଲେ ଶୁଣିବ ନାହିଁ । ପଦ ।

ବୃକ୍ଷର ମହିମା କି ଦେବ ଉପମା ଡାଳକୁ ମେଲୁଛି ତାଳ । ଦେହ ପଞ୍ଚଶାଖା ପଲ୍ଲବ ପତ୍ର ଉପରେ ହୋଇଛି ଫୁଲ । ୧ । ଶୂନ୍ୟରୁ ଅସରି ଭମ୍ବ ସଞ୍ଚରଇ ନାହିଁ ଛାଡ଼ି ନିଜ ସ୍ଥାନ । ଜଳନ୍ତି ବୃକ୍ଷରେ ନାବ ଖଟାଉଛି ଷଡ଼ରସରେ ଭୋଜନ । ୨ । ଜଳନ୍ତ ପବନ ଚଳନ୍ତି ବହୁଛି ସୁଚୀମୂଳ ସ୍ଥାପେ ବାଟ । ଉଲଟେପା ସ୍ଥାପେ ଭଙ୍ଗାଟ ଏଡିଛି ଗୁଳେ ମତ୍ତଗଜ ଥାଟ । ୩ । ଶିଶୁପା ଉପରେ ହିଂସୁଳି ବଢିଛି ହୁହିଁକି ଦ୍ରୁହିଁ ଅଦୃଶ୍ୟ । ବୋଲେ ପର୍ଶୁରାମ ଗୁରୁ କୃପାବିହୀନେ ଅବଶ୍ୟ ହୋଇବ ଦୃଶ୍ୟ । ୪ ।



[illegible]

ଭକତ ଦୁଃଖରେ ଦୁଃଖୀ ମହାପ୍ରଭୁ ରୁଧିର ନଦୀ ସାତ ରାଜ ମଧ୍ୟରୁ ଉଦ୍ଧରିଅ ପକ୍ଷୀ ରକ୍ଷି । ପଦ । ଦୁଃଖ ନାମତେଣୁ ଯନ୍ତ୍ରି ପୁରକୁ ପଡ଼ା ମାଗିବାକୁ ଗଲ । ବେଢି ଭଜିରବେ ପେଟେ ଛିଣ୍ଡାଇଲେ ଭକତ ହୃଦେ ସହିଲ । ୧ । ଦଶ ସହସ୍ର ରାଜାଙ୍କର ନିମନ୍ତେ ଗଧ ପୁରୁଷ ଶଙ୍ଖଦେଲ । ଭୀମ ହସ୍ତେ ଜରାସନ୍ଧ ବଧ କରି ବନ୍ଦୀ ମୁକୁଳାଇ ଦେଲ । ୨ । ଶରରେ ସାଗର ବାନ୍ଧି ଧନଞ୍ଜୟ ମୀନ ରୂପେ ବଳେ ଭରି । ଗିରି ଟେକି ହନୁ ଙ୍କେ ଉଠନ୍ତେ ଶ୍ରୀମୁଖୁ ରୁଧିର ଝର । ୩ । ଭୀଷ୍ମଙ୍କ ଦୁହିଣୀ ରୁକ୍ମିଣୀ ଭାବିଲା ଶିଶୁପାଳ ଅଭିମାନେ । ଲକ୍ଷେ ରାଜା ମୁଖେ କାଳି ଲଗାଇଲ ଘେନିଗଲ ଅନ୍ତର୍ଦ୍ଧାନେ । ୪ । ଚକ୍ଷୁକୁ ଯେସନେ ପିଛଡ଼ା ରକ୍ଷଣ ଭକ୍ତଙ୍କୁ ତେସନେ ଗୋସାଇଁ । ବଳରାମ ଦାସ ଭାବରେ ଭଣିଲେ ପ୍ରଭୁ ଯଣେ ଲୁଚି ଯାଇ । ୫ ।



### ରାଗ ପରଜ—ପଞ୍ଚତାଳ ।

ତାରେ ଦର୍ଶନ ଦିଅ ଭକ୍ତ ରଞ୍ଜନ । ସୁନ୍ଦରବର ଏ ପାତକୀର ଜୀବନ । ଘୋଷା । ଅଖଣ୍ଡ ବ୍ରହ୍ମାଣ୍ଡ ନାଥ ଜୀବ ତାରଣ, ଅସୀମ ମହିମା ସର୍ବ ଗୁଣେ ନିପୁଣ । ତୁମ୍ଭ ନାମ ସ୍ମରି, କ୍ଷଣେ ନ ପାରେ ହରି, କରୁଣେ ନାମ ଧରି, ଡାକୁଛି ଭକ୍ତବର, ଅଜ୍ଞାନ ତାରେ ପୂରି, ଅନ୍ଧକୁ ଚିତ୍ର ପରି, ନ ଦିଶେ ପୁଣ୍ୟ ପଥ ଦର୍ଶନ । ୧ । ଦୁର୍ଲ୍ଲଭ ମାନବ ଜନ୍ମ କଳଙ୍କେ ଲୀନ, ହେଲା ଅଛୁ ଦେଖୁ ଦେଖୁ ଗଲାଟି ଦିନ, ପାପର ସନ୍ତାପେ, ହୃଦୟ ବ୍ୟଥା କରେ, ଯନ୍ତ୍ରଣା କାତରରେ, କିଛି ବୁଦ୍ଧି ନ ସ୍ଫୁରେ, ଭାସୁଛି ଶୋକନୀରେ, ଉପାୟ ବିସ୍ତାରରେ, କହିଁ ଅଛୁ ହେ ଜଗଜ୍ଜୀବନ । ୨ । ଅମୂଲ୍ୟରେ ୨ ୨ ନୋହେ ପବିତ୍ର ଧନ, ଜାଣୁ ଜାଣୁ ଅଳସରେ କାଟିଲି ଦିନ, ମୋହରେ ଅନ୍ଧ ହୋଇ ସୁପଥକୁ ହରାଇ, ଏବେ ଯିବଇ କାହିଁ, [illegible] ଅନୁତାପ ଗାଇ । ବିଜ୍ଞାଣ ଜ୍ୟୋତି ଘନ ବରନ । ୩ । ବିହିତେ ଅଭୟ ଦାନ କରି [illegible] ପ୍ରଭୁ ହୋଇବ ଅନ । ପାପୀ ପାପ ନିବାର, ମନେ ନାହିଁ ବିଚାର, ଏହା ଶୁଣି କର୍ଣ୍ଣରେ ଯୋଡୁଛି କେଳିକର, ଦୋଷ ମନେ ନ ଧର; ପାଦେ କିଙ୍କର କର, ନୋହିଲେ ନଷ୍ଟ ହେବ ଏ ଦୀନ । ୪ ।

---

### ତାଳ—ଯତି ।

ଅରେ ବାଇବର । ବାଟେବସା ଘର ଗଣ୍ଡି ଦମ୍ଭକର । ପଦ । ସବୁ ବୋଲୁଅଛୁ ମୋର ମୋର । ପିନ୍ଧିଲା ବସନ ନୁହେ ତୋର । ଘରକୁ ଘରଣୀ ଯାହାକୁ ଅଣିଛୁ ଦେହ ହୋଇଯିବ ସାତପର । ୨ । ଏଡାର ଧନକୁ ଲୟକର । ବନ୍ଧୁ ବାନ୍ଧବେ ଅଛିବେ ତୋର । ବ ବଦଳେ ମେଳା ମହୋତ୍ସବ କରି ଠେରଦକେ ଯିବେ ପେଟା-ଘର । ୨ । ନଳିନୀଦଳରେ ଯେସନେ ଜଳ । ପବନେ ଢୁଅଇ

ଢଳ ଢଳ । ପରର ପୀରତ କର ନ ଯୋଗାଇ, ପାଣି ଫୋଟପରି ଏ ଶରୀର । ୩ । ମାତା କାନ୍ଦୁଥିବ ଉଚସ୍ବରେ । ପୋଷଣାହାରୀ ରହିଲା ଦୂରେ, ଘରର ଘରଣୀ ବସି କାନ୍ଦୁଥିବ ମୁଖ ପୋତି ଗ୍ରୀବେ ଦେଇ କର । ବାଲି ବନ୍ଧାରେ ତୋର ଘର । ଲହଡ଼ି ବାଜିଲେ ହେବ ଚୂର । ଭଣିଲେ ଅଚ୍ୟୁତ ବଚନରେ ସତ୍ୟ ସାଧୁ-ଜନମାନେ ରକ୍ଷାକର । ୫ ।



ଚାଳ—ପତ୍ ।

ମନ ମୂଷା ହୋ, ତୁହି ଗଞ୍ଜେଇ ଖାଇ ଦନେ ବିରାଡ଼ିକୁ ଚିହ୍ନିଲୁ ନାହିଁ । ଘୋଷା ।ଗାଛୁଥ ମୂଷାକୁ ବିସ୍ମୟ ଲଗିଛି, ମୂଷା ବସିଅଛି ଗଞ୍ଜେଇ ଖାଇ । ମଣ୍ଡୁକୀ ଉପରେ ଲଢ଼ାଇ ଲଗିଛି ହସ୍ତୀ ପଳାଇଲା ଗୃପୃଡ଼ା ଖାଇ । ୨ । ବକ କସିଥିଲା ମୀନକୁ ଚାହିଁ, ମିନ ଗିଳି-ଦେଲା ବକକୁ ପାଇଁ । ଯୋଜ ଯେ ବୁଡ଼ିଲା ପଥର ଭାସିଲା, ଦେଖି ଅଚମ୍ବିତ ହୋଇଲି ମୁହିଁ । ୨ । ବାରବାଟୀ ବିଲ ଚାଷ ମୁଁ ଚଷିଲି ପାଞ୍ଚ ପୁଅଯାକ ମୂଲ ଲଗାଇ । ଭୁଅ ବିରଡି ଯେ ବୈଷ୍ଣବ ହୋଇଲା ତେବ ମନ୍ତ୍ରପାଠ ଦେଲା ଲଗାଇ । ୩ । ବୋଲେ ଗଙ୍ଗାଧର ବିଶ୍ୱକର୍ମା ଗ୍ଲାର ଦେବ କି ନ ଜାଣେ ହରିଙ୍କି ଧ୍ୟାୟି । ଏହି ଗୁରୁପଦ ଅର୍ଥ ବଡ଼ ଛନ୍ଦ କେହି ଜାଣିଅଛ କହରେ ଭାଇ ।



ଚାଳ—ଅଡ ଖେମଟା ।

ଶ୍ରୀ ଭଜନ ଭଜୁରେ ମନ, ମାଳା ଗଡେ ଠଅଛ ଠକ । ଠକିଅ ଠକ ରହିଛି ସାରା ଦୁନିଅ ମୁଲକ । ପଦ । କେ ଭଜୁଅଛି କାହାକୁ, କେ ସାହା ଚାହାବାହାକୁ, କେବଳ ବିଷ୍ଣୁ ମାୟାକୁ ନ ବୁଝନ୍ତି ଅବି-ବେକ । ୧ । କଣ୍ଠାରେ ଅଠା ବୋଳାଏ, କେତେ ହେଲେ ବଙ୍କ-ଷମ, ଡୋର କୌପୀନ ବାନ୍ଧଣ ପଡିଲେ ଘୋର ନରକ । ୨ । ଚିହ୍ନେ ଯାର ଦମ୍ଭା ହୋଏ, ବ୍ରହ୍ମଜ୍ଞାନ ସମ ନୋହେ, ସତ୍ୟକୁ ଧର୍ମ

ଭଦଧେ ଅଛ ଧରବ ତାରକ । ୩ । କହେ ଦୀନବନ୍ଧୁ, ଦାସ, ମୂଳମନ୍ତ୍ର କର ଗ୍ରାସ, ସ୍ମୋଜନ ଶେଷେ ଭଜନ ଅଛ ସବୁ କଥା ରଖ । ୪ ।



## ତାଳ—ଖେମଟା ।

ଅଛ ନାହିଁ ଅନ୍ୟ ଭରସା, ହରି ପାଦତଳେ ଲଗାଅ ଆଶା । ଗୁରୁ ଦେବଥିଲେ ଉଦ୍ଧାର ପାଇବୁ ନୋହିଲେ ଘଟିବ ଦଶାଦଶା । ପଦ । ପିମ୍ପୁଡି ଚଳାଇ ପର୍ବତ ଠେଲଇ ହେମ ଗିରିଶୃଙ୍ଗ ଗିଳିଲା ଶଶା । ପଣ୍ଡୁକୀ ଯୁଦ୍ଧରେ ଗଜ ହାରିଗଲା ହେଳା ଦେଖି ବାଘ ଛାଡିଲା ବସା । ୧ । ମିଳି ଅଣଗୃଣ ବହିବ ବଢାଣ ଭାଙ୍ଗିବ ପଞ୍ଜୁରୀ ଉଡିବ ହଂସା । ଶୃଗାଳ ମାଡରେ ସିଂହ ଚଳିଚଳା ଯୁଦ୍ଧ ଲାଗିଅଛି ମଞ୍ଜାରୀ ମୂଷା । ୨ । ହ୍ରଦ ଶୁଖିଗଲା ମୀନ ପ୍ରବଳିଲା ଶ୍ୟାମଳାକୁ ଯେବେ ଉଠିଲା ବକା । ଅଣ୍ଡିସ ମାଣ୍ଡିସ ପୂର୍ବଭାଗ କର ପର୍ବତ ଠାକୁରୁ ଉଠିଅଛି ମୂଷା । ୩ । ସୋରଷ ଗଛରେ ପଣସ ଫଳିଛି ତହିଁ ବାହା-ରୁଛି ଗୋଟିଏ ଖେଷା । ଛେଳୁଲିଅ ବିଲୁ ଉଠିଲ ଧରିଛି ଗୋଟିକ ହୁଅ ବୋଟିଏ କିଶା । ୪ । ପର୍ବତ ଶିଖରେ ତର୍ଭୁଜ ଫଳିଛି ତହିଁ ପଡିଅଛି ଧାନର ସୀସା । ଧାନ ଖାଇବାକୁ ମନ କରି-ଅଛି ମଞ୍ଜାରୀ କରିଛି ଚରଣ ଓଷା । ୫ । ନାବ ତ ଦଦରା ନ ସହଇ ଭାର ଲହରୀ ମାରୁଛି ଅତଡ଼ାମିଶା । ନାବ ପୂର୍ବମଙ୍ଗେ ତରିର ଡ଼ାକୁଛି ନ ଦେଇ ନ ଖାଇ ହେଲା ନିଅଣା । ୬ । ସାଙ୍ଗରୁ ଖୋଲକ ଗଞ୍ଜି ମାରୁଅଛି ବାଡ ଭାଙ୍ଗି ପଳାଇଛି ବେଳସା । ବୋଇତ ଭିତରେ ସମୁଦ୍ର ଲୁଚିଛି ଦାସ ଗୋବର୍ଦ୍ଧନ ଅର୍ଦ୍ଧ ଦଶା । ୭ ।



ତାଳ—ଛପକା ।

ଅରେ ଶୁଣ ଝଡ଼ଖଡ଼, ମିଛ ମାୟା ରେ ପଡ଼ି ହେଲୁ ଲଡ଼ବଡ଼ ଲଡ଼ବଡ଼ । ଘୋଷା । ଚତୁର୍ଥ ବୟସ ହେଲେ ଅସି, ଜନମ ହୋଇବ ଶେଷଗତି, କଫ ସନ୍ନିପାତ ରୁନ୍ଧ ବାତପିତ୍ତ ତଣ୍ଟି ଶୁଭୁଥିବ ଘଡ ଘଡ଼ ଘଡ଼ ଘଡ଼ । ୧ । ପିଣ୍ଡରୁ ପରାଣ ଯିବ ଛାଡ଼ି, ଶମଶାନକୁ ନେବେ ଘୋଷାଡ଼ି, କାଠ ଗ୍ରନ୍ଥବନ୍ଧ କୁଟୁମ୍ବ ସହିତେ ଭାଠ ଖଞ୍ଜି ଦେବେ ବଡ଼ ବଡ଼ ବଡ଼ ବଡ । ୨ । ନେଇ ଥୋଇ ଦେବେ ତହିଁ ପରେ, ଦୟା ନ ବହିବେ କାହିଁ ତରେ, ଜଳମୁହାଁ କରି ହାତ ଗୋଡ ପୂଣି ଭାଙ୍ଗିଦେବେ ଧରି ମଡ଼ ମଡ ମଡ଼ ମଡ଼ । ୩ । ଦଶମ ଦିନରେ ଦଶଘର, ଏଗାର ଦିନରେ ଷୋଡଶର, ତେରଦିନେ ଅନ୍ନ ବ୍ୟଞ୍ଜନ ଖିରିଷା ବସି ଖାଉଥିବେ ସଡ଼ ସଡ଼ ସଡ଼ ସଡ । ୪ । କହେ ଗଦାଧର ହେତୁ କର, ଖୋଜି ସାଧୁସଙ୍ଗେ ବିହର, ଯେବେ ଏ ସଂସାରୁ ତରିବୁ ମନ କୃଷ୍ଣ ପାଦପଦ୍ମେ ପଡ଼ ପଡ଼ ପଡ଼ ପଡ଼ । ୫ ।



ତାଳ—ଏକତାଳ ।

ଜାଣୁ ଜାଣୁ ଶୁଣୁ ଶୁଣୁ ନ ଜାଣୁରେ ଅଜଣା । ଥିଲିବେଳେ ଯୁଲଭ ଗଲାବେଳେ ଭାଜଣା । ପଦ । ସୃଷ୍ଟି ଶୂନ୍ୟରୁ ହେବ, ସେର ମୁଣ୍ଡେ ନିରାକାର, ସଲିଳ ଜ୍ୟୋତି ଉପରେ ଉଡ଼ୁଛି ବାନା । ୧ । ନିରାକାର ଶୂନ୍ୟଦେହୀ ଶୂନ୍ୟରେ ଅଛନ୍ତି ରହି, ନ ଦିଶଇ ତାଙ୍କ କାୟା ନିକଟେ ଠଣା । ୨ । ସେହୁଛି ଶୂନ୍ୟରେ ପାଣି, ଟେକ ତୁ ମନ ଉଜାଣି, ଟେକ ବ୍ରହ୍ମରନ୍ଧ୍ରେ ନେଇ ହେବ କରୁଣା । ୩ । ପୂଳ ଶୂନ୍ୟ ପରେ ବାସ, ଠାକୁରୁ ପରମହଂସ, ଠାବ ନ ପାଇ ଥିରତ କରେ ଭାବନା । ୪ ।



ରାଗ—ଯତି ।

ଧନେ ଭୃଙ୍ଗି ଯିବ ଏ ଗୋପନଗଣ୍ଡି ଲୋ । କଳାସାର । ପଦ । ଶୂନ୍ୟେ ଚଞ୍ଚଳା ଚଞ୍ଚଳୀ ଉଡ଼ନ୍ତି ପକ୍ଷ ବିସ୍ତାରି । ସେ ତୋତେ ପାରିବେ ଧରି । ସମସ୍ତଙ୍କୁ ହେତୁ କରି । ପାରିଲେ ତୁ, ଦଅ ଭସ୍ମ କରି ଲୋ । ୧ । ସେ ପେଙ୍ଗ କଲ୍ପନା-ନାରୀ । ଦୃଷ୍ଟିକୁ ଅଛି ଅବୋରି । କାମକଳା ରସ ପୂରି । ସେହିଟି ଅଜ୍ଞାନ ସାରି । ଜ୍ଞାନକୁ ସେ । ଅଟଇ ବଇରୀ ଲୋ । ୨ । ଶଙ୍ଖଚକ୍ର ଗଦା ଧରି । ସବୁରି ହୃଦରେ ହରି । ବିମ୍ବାଧରେ ଧ୍ୱନି କରି । ପଞ୍ଚଶବଦେ ଉଚ୍ଛୁଳି । ଧ୍ୱନି ପଡ଼େ । ରଖ ମନ ତୋର ଲେ । ୩ । ସଦଗୁରୁ ଆଦେଶ କରି । ବ୍ରହ୍ମଟରେ ବ୍ରହ୍ମ ସୁମରି । ଛେଦ ଡେଣା ସେ ପଡ଼ିବ । ତେବେ କାଳ ଜିଣି ପାରି । ଦୀନ କୃଷ୍ଣ । କହଇ ବିସ୍ତାରି ଲୋ । ୪ ।



ରାଗ—ଖେମଟା ।

ଥକ ଏଣିକରେ ମନ ଭୁଲ କାହିଁକି । ଉଡ଼ୁଛି ଚାନ୍ଦଛଞ୍ଚାଣ ମନେ ନାହିଁକି । ପଦ । ଅଙ୍କୁର ଦେଖ କଳପଣା ; ଛେଦିପକା ବେନି ଡେଣା, ଶୂନ୍ୟରେ ବଜୁଛି ବୀଣା ଶୁଭୁ ନାହିଁକି । ୧ । ହାଟରେ ପାଞ୍ଚ ପାଇକ, ହେଉଛନ୍ତି ଡାକହାକ, ହାଟ ସରିଗଲେ ଧନ୍ଦା ଅଛି ଥାଇକି ରେ । ୨ । ସୁନା ପଞ୍ଜୁରୀରେ ଶୁଆ, ଦାନା ଦେଉଛି ନୂଆ ନୂଆ, ଉଡ଼ିଗଲେ ସାଙ୍ଗ ଶୁଆ ଧରି ଦେଇ କି ରେ । ୩ । ଭ୍ରୂଲତା ମଧ୍ୟରେ ଅନା, ତ୍ରିକୂଟେ ଉଡ଼ୁଛି ବାନା, ହଜିଲେ ପରମ ସୁନା ଅଛି ପାଇକି ରେ । ୪ । ଓଁକାର ମଧ୍ୟରେ ଦେଖ, ଓଲଟି ରହିଛି ହଂସ, କହଇ ଗୋବେଖ ଦାସ ଅନୁସରକି ରେ । ୫ ।



ରାଗ—ଖେମଟା ।

ସିନ୍ଧୁ ମିତ ଗୋ, ଶୂନ୍ୟେ ଶୁଭିଲା ବେଣୁ ଗୀତ ଗୋ । ସେ ଧ୍ୱନି ଶୁଣି କର୍ଣ୍ଣେ ଗଲି ଉଭାଟ, ମନେ ଦେଖିଲି ମହାଶୂନ୍ୟେ ବିଜେ

ଅନାହତ ଗୋ । ପଦ । ଅଳ୍ପ ବୋଲି ମଣିଥିଲି ଦେଖି ବହୁତ ମୁଁ ହେଲି ଅଚମ୍ଭିତ । ଘର ବାହାରେ ସେହୁ ଅଛନ୍ତି ଜଡ଼େ ହୋଇ, ଘଟ ଭିତରେ ଗୃହ ହେଲି ଅଲକ୍ଷିତ ଗୋ । ୧ । ଦ୍ୱାଦଶ ଶବଦେ ଭଜି ବାଜୁଛି ଯନ୍ତ୍ର, ଦେଖ ସେ ମହାମନ୍ତ୍ର । ଗୃହଦ୍ୱାର ଅଟକାଇ, ଅଛନ୍ତି ବେଦଗୁରୁ; ନନ୍ଦିକି ଲକ୍ଷକର ହୋଇଛନ୍ତି ସ୍ଥିତ ଗୋ ।୨। ଯୋଗମାୟା ସିଂହାସନେ ବିଜେ ଅନନ୍ତ, ନାଦେ କୋଟି ଆଦିତ୍ୟ । ସର୍ବଦା ପ୍ରେମାନନ୍ଦେ ବହୁଛନ୍ତି ଅନନ୍ଦେ, ସକଳ ଅମ୍ବା ମଧ୍ୟେ ପ୍ରାଣ ପଞ୍ଚଭୂତ ଗୋ । ୩ । ଦେଖିଲି ମାତ୍ରକେ ଲଖି ବହିଲା ନେତ୍ର, ସେ ଯେ ମୁକତି ପଥ । କହଇ ହୃଦାନନ୍ଦ ନିତ୍ୟ ପରମାନନ୍ଦ, ପଦାରବିନ୍ଦ ତଳେ ବନ୍ଧୁ ଯୋଗ ନିତ୍ୟ ଗୋ । ୪ ।



ରାଗ—ଛପକା ।

ଭଜ ରାଧେ ରାଧେ ବ୍ରଜନନ୍ଦନଙ୍କୁ । ନନ୍ଦନନ୍ଦନ ବଂଶୀବଦନ ଶ୍ରୀରାଧା ମୋହନଙ୍କୁ । ପଦ । କହୁଅଛି ଚଇତନ ଶୁଣରେ ମନାଇଁ କ୍ଷୀରନିଧି ମଧ୍ୟ ଦେଖ କଳ୍ପବଟ ମୂଳ । ୧ । ଗୁପତ ନୀଳାଚଳ ମହାନିତ୍ୟ ଯେଉଁଠାଇଁ । ଘନ ଘନ ହେଉଛି ନିଦ୍ରା ମାଡ଼େ ସେହି-ଠାଇଁ । ୨ । ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମରେ ମନ୍ତ୍ର । ଗୃହଦ୍ୱାରେ ଗୁରୁବେଦ ହୋଇଛନ୍ତି ସ୍ଥଳ । ୩ । ଘଟ ବାଉଁଶ ବାଡ଼ ଘେରିଛି ସଂଗୀରେ । ଜଗନ୍ନାଥ ମହାପ୍ରଭୁ ସିଂହାସନ ପରେ ।୪। ତ୍ରିନୟନ ଯେ ଅଙ୍ଗେ ପାଜିଅଛି ଶୋଭା । ନିତ୍ୟଲୀଳେ କଣ୍ଠଶୋଭାକି ଦର୍ଶେ ବେଢ଼େ ପ୍ରଭା । ୫ । ଦାରୁବ୍ରହ୍ମ ପାହାଚ୍ଛନ୍ନ କରଅଛି ଅଙ୍ଗ । ଠୂଳ ଶୂନ୍ୟ ପରେ ଦେଖ ଲାଗିଛି ସହାସ । ୬ । ଡାକହାକ ଶବଦ ଯେ ହେଉ ଯେଉଁଠାଇଁ । ଚେଇଁଲୁ ଜଗିଲେ ତୁ ଯେ ଚିହ୍ନାଇବୁ ନାହିଁ । ନାଦକୁ ବିନ୍ଦୁରେ ଯେବେ ମିଶାଇବୁ ନେଇ । ଚକ୍ରମୂର୍ତ୍ତି ଦାରୁବ୍ରହ୍ମ ଦେଖିବୁ ସେଠାଇଁ ।୮। ଥୟ କରି ଚଞ୍ଚଳ ମନ ଭ୍ରୂମଧ୍ୟେ ଭର । ଦୟା ଶାନ୍ତି କ୍ଷମା ଭାବ ସାଧୁସଙ୍ଗ କର । ୯ । ଧର୍ମ ଅର୍ଥ

ଦାମ ମୋକ୍ଷ ହେଉଅଛୁ ଯୂବ । ନେବା ଅଣିବାକୁ ଥକ ନାହିଁଟି ଦ୍ୱାର ।୧୦। ପାଣିପଙ୍କ, ନାହିଁ ପହିଁ ମାରୁଛୁ ଲହଡ଼ା । ଫୁଲ ଫୁଟିଅଛୁ ତହିଁ ସହସ୍ର ପାଖୁଡ଼ା । ୧୧ । ବାହିରୁ ବାସନା ଯେବେ ଗନ୍ଧସେବା କର । ଭ୍ରମର ବୁମୁଛୁ ଦେଖ କେଶର ମଧ୍ୟର । ୧୨ । ପଦ୍ମ ବୋଲୁଛନ୍ତି ଶୁଣରେ ମନାହିଁ । ଜଗତକୁ ମଲ୍ଲ ଜୀବ ରୁମେ ଟଳ ନାହିଁ । ୧୩ । ରହି ବଧୂକା ଦେଖ ନିତ୍ୟରେ ସେ ଅଛୁ । ଲହ୍ମୁକବ ଭୁଷଣ୍ଡ ଯେ ଅମର ହୋଇଛୁ । ୧୪ । ବାରକୁ ପବରେ ଜପ ବ ହୋଇରୂରେ ମନ । ଶିଶୁଦେବ ପଦବ ଦେଖ ସୁସଙ୍ଗଭଜନ ଶଅଛି ଯେ ଶେଷଦେବ ଫଣିମଣି ପରେ । ସ୍ୱରୂପ ବିହାରେ ମନ ଅନୁପ ମନ୍ଦିର । ଦ୍ୱଅଷ୍ଟ ହର ଅନନ୍ତ ଦ୍ୱାଦ ଲ ଙ୍କୁ ନାଦ୍ଧ । ଦଶ ... ଶା ସହଜ ସୂତ୍ରେଣ । ୧୭ । ଜଗନ୍ନାଥ ଶ୍ରୀଚରଣେ ... ନ । ଲୁବ ଦୋଷ ଶିଶୁ କହେ ଚଣ୍ଡିଅ ଅଧମ ।୧୮।



ତୋତେ ସେହରୂପ ଦେଖାଅ ହର । ଜସୁ ଘୃଷ୍ୱଧେ ସ୍ୱଧେ ... ବାଂଶର୍ଯ୍ୟ !ଦୋଷା ।ଯେଉଁ ଦନ ବଳଦ୍ୱାରେ ହେଲେ ... । ତ୍ରିପାଦରେ ଦାନ ନେଇ, ବଳିକି ପାତାଳେ ଥୋଇ, ଧୂଣି ଅଦି ଶୁକ ମନ୍ତ୍ରୀ ନେତ୍ରେ ତାର କୁଶ ମାର । ୧ । ଯେଉଁ ଦନ ... ଶୀତର । କୈକେୟୀ ହେଲେ ଭଗାସ୍ତ୍ର, ରାମ ବନବାସ କର, ସଙ୍ଗତରେ ସୀତାନାସ୍ତ୍ର ଲକ୍ଷ୍ମଣ ପା ... । ୨ । ବୋଲେ ଜସୁଦେବ ଶତ୍ତେ ଭ୍ରଵ ବିଗ୍ରହ । ଅହେ ଦୁଷ୍ଟ ଦଇତ୍ୟାର କଂସ ଅଷ୍ଟମଲ୍ଲ ମାର,ମାତା ପିତା ବନ୍ଦୀଘରୁ ଅପଣ ଥିଲ ଛଡ଼ାଇ ।



ତାଳ—ଛପତା ।

ବାଇମନ ମ ଭୁଚଙ୍ଗା, ଶରୀର ମଧ୍ୟରେ କେମନ୍ତେ ମଙ୍ଗା ।ଧେ ଷା ... ବସୁତ ଅବୋଧ ବହଛୁ ବୋଝ ସେଜିତିବେ ଝାଣ୍ଟ ଦେଇ । ଛଳ ଯେ ନେବ ପାଲଟା ବସନ ସଙ୍ଗ ଛୁଡିତିବ ଘଟେ ରଵା । ୧

ଦଶଦ୍ୱାରେ ଦଶ କବାଟ ଲାଗିଛୁ ଏକା କଳଣୀ କ ପଡ଼ିଛୁ ଖୋଜା କଳଣୀ ମିଳଲେ କବାଟ ଫିଟିବ ବନ୍ଧ,କୁଟୁମ୍ବକୁ ଛୋଡ଼ ଭଜ ଯା । ୨ । ଜଳର ଭିତରେ ବନ୍ଧ ବାନ୍ଧଅଛୁ ବନ୍ଧଜାଳି ଯିବ ଧାର ଜଗ ଯା । ସେ ଧାରକୁ ଯେବେ ଜଗି ତୁ ପାରବୁ ନିତ୍ୟପ୍ରତି ତହ ଲପ୍ତ କର ଯା । ୩ । ବୃକ୍ଷ ବୋଲି କର ଗୋଟିଏ ସେବୁଛୁ ତହିଁ ମୂଳେ ପାଣି ଦେଉଥରେ ଯା ଯା । କହେ ଦୀନକୃଷ୍ଣ ସେ ବୃକ୍ଷ ସେବଲେ ଚ କର ପାଇବ ସେ ସମସ୍ତା । ୪ ।



ମନ୍ ଥିବାଇ । ଏ ଦେହ କଣ୍ଠ ଭାଣ୍ଡି ଯିବ ମିଳାଇ ରେ । ସବୁ ଧନେ ଏ ଦେହ ରହିବ ନାହିଁ ରେ । ପଦ । କାନ୍ତୁ ଭଙ୍ଗା ଦାଦର ଦେଖିବୁ ତୁହି । ଶରଧା କରୁ କିପାଁ ସେ ଘର ପାଇଁରେ । ୧ । ଷଡ଼ଚକ୍ର ଉପରେ କମାର ଥାଇ । ରୂପ ଗଢ଼ିଦେଉଛୁ ଅଗ୍ନି ଲଗାଇ ରେ । ୧ । ଯେତେବେଳେ କମାର ଶାଳ ଛାଡ଼ଇ । ତେତେ-ବେଳେ ସେ କେଉଁ ଅଡ଼କୁ ଯାଇ ରେ ।୩। କମାର ନାମଗୋଟି ଅଟେ କହ୍ନାଇ । କହନ୍ତି ଦୀନକୃଷ୍ଣ ସେ ପଦଧ୍ୟାଇ ରେ ।୪।



ଅରେ କଳାମଣ୍ଡି । ଧନେ ଭୁଲିଯିବ ମତ୍ତ ଗର୍ବ ଗୁଲି ରେ । ମାଅ ମାଅ ବୋଲି ଯାହା । ତାହାର ନ ଥିବ ଦୟା ସେ ବୋଲଇ ବିଷ୍ଣୁମାୟା,ସଂସାରଅଛନ୍ତୁଛାୟା । ବୃଦ୍ଧକାଳେଅପୁତ୍ର କହେଲରେ ପୁତ୍ର ପୁତ୍ର ବୋଲି ତୁହି । ତୋମୁଖରେ ଦେବ ଚୂଇ । ସଙ୍ଗହୋଇ ଗୃହଭାଇ । ନେବେ ଯେ କନ୍ଧେ ବୁହାଇ । ମଶାଣିରେ, ପକାଇବେ ଜାଳରେ ।୨। ତୁ ବୋଲି ଭାର୍ଯ୍ୟ ମୋର ଅଟଇ ଗଳାର ହାର । ତୁହି ମରଗଲ ପର । ସେହି ହେବ ସାତପର । କାନ୍ଦୁଥିବ, ନାଥ ନାଥ ବୋଲିରେ । ୩ । ଦୀନକୃଷ୍ଣ ଦାସ କହି । ହରିଙ୍କି ଭଜିଲି ନାହିଁ । ମାୟା ମୋହେ ପଡ଼ି ବାଇ । ଚେତା ହେତୁ ଜ୍ଞାନ ନାହିଁ । ସଦଗୁରୁ, ପାଦ ଗଲି ଭୁଲିରେ । ୪ ।



କପିଳା ବୋଲୁଣ ଗାଈ ସେ ସଦା ସର୍ବଦା ଯୁବା । ଷଡ ମୃଗ ତନିଲୋଚନ ଏକ ପାଦରେ ଜିଭା । ୧ । ଭଲ ବପସ୍ୱାତ ଗାଈ ସେ ଲାଞ୍ଜ ବାଟେ ଚରଇ । ମୁଖବାଟେ ତାର ମଳ ଯେ ଚକ୍ଷୁବାଟେ ମୁତଇ । ୨ । ଧବଳ ମୁରଢ ଗାଈ ସେ ତାର ନାମଟି ସ୍ୱାସ । ସଦଗୁରୁ ସେବା କଲେ ତୁ ଭେଦ ପାଇବୁ ପର । ୩ । ଦଶସ୍ତୁସ ସେହ ଗାଈର ତାର ଗୃଷ୍ଟେଟି ପାଦ । ଗୁରୁ ସେବାକଲେ ପାଇବୁ ସ୍ତାର ମରମ ଭେଦ । ୪ । ଅଚ୍ଛାଇ ଦନର ଗାଈ ସେ ସେତ ହେଲ ତଣୁଅଁ । ଗୁରୁ କୃପାକଲେ ଗୋପାଳେ ହେବ ସେ ଗାଈ ଦୁହାଁ ।୫। ଗାଈକ ଗୁହାଳ ସଜାଡ ପାଞ୍ଚ ଖମ୍ବ ବସାଇ । ତହିଁ ତନି ଶେଣୀ ନିରେଖି ବଡା ଘଣ୍ଟେଣୀ ଦେଇ । ୬ । ଷଡଗୁଣ କବ ଲଇ ସେ ଗଣ୍ଠି ଚ୍ଛପୁଣେ ଦେଇ । କହେ ପର୍ଶୁରାମ ବିହାସୀ ଗୁରୁ ସେବିଲେ ପାଇ । ୭ ।



ପ୍ରାଣ ସଜନି ଗୋ, ଶୁଣିଲେ ହୋଇବ ବାଇ । ବନର ଭିତରେ ଗାଈ ପ୍ରସବିଛି ବାଘୁଣୀ ବାଛ କଡାଇ । ଘୋଷା । ପିତା ମାତା ଦୁହେଁ ଜନମ ନୋହୁଣୁ ପୁଅ ଦାଣ୍ଡରେ ଖେଳଇ । ଗାଈ ନ ସୁଦୁଣୁ ଗୋପାଳୀ ଦୁହୁଁଛି ଲବଣୀ ହାଟେ ବିକଇ ॥ ନଦ୍ଭା ଭିତରେ ଦବଅ ଲଗିଛି ଏକଥା ଦେଖିଛୁ କାହିଁ । କୂପର ଭିତରେ ମୃଗ ପ୍ରସବିଛି ଦାଣ୍ଡେ ବାଛୁରୀ ଖେଳଇ ॥ ନାଗ ସର୍ପକୁ ଯେ ମଣ୍ଡୁକ ଗିଳଇ ଏକଥା ଦେଖିଛ କାହିଁ । ଦେଢ଼ସୁର ଭାଇବୋହୁଙ୍କର ଭାବ ତାଳେ ଗୋପିଅ କହଇ ॥ ଗୃହସ୍ତ ମହଲ ବିଧବା ନୋହଲ ଏକଥା ଦେଖିଛୁ କାହିଁ । ଗୋଲକ କହଇ ସଦଗୁରୁ ଧ୍ୟାୟି ପଣ୍ଡିତେ ଗୋଚର ନୋହୁ ॥

-- ସ ମା ପ୍ତ । --

କଟକ ମନମୋହନ ପ୍ରେସରେ ଶ୍ରୀମୋହନ ଚରଣ ଦାସଙ୍କ ଦ୍ୱାସ ମୁଦ୍ରିତ ୧୯୩୧ ।

# ମହାଭାରତ ।

## ଅଷ୍ଟାଦଶ ପର୍ବ



ଏ ବହିଟି ସଂକ୍ଷିପ୍ତ ମହାଭାରତ ନୁହେ-ଯେଉଁ ଅଠରଖଣ୍ଡ ମହାଭାରତ ଯାହ ପଢି ଓଁ ବଗଳା ଭାଗୀସମନ୍ତଦାସଙ୍କ ମହାଭାରତ ପଢି ଯେସବୁ ବିଷୟ ଜାଣିପାରୁଛ କେବଳ ଅମର ଏହି ଅଷ୍ଟାଦଶ ପର୍ବ ମହାଭାରତ ପଢିଲେ ସେ ସମସ୍ତ ବିଷୟ ଜାଣିପାରିବ ।

ଅଠରଖଣ୍ଡ ମହାଭାରତରେ ଗୋଟିଏ ଗୋଟିଏ ବିଷୟକୁ ବାରମ୍ବାର ଲେଖାଯାଇ କେବଳ ବହିଟିର ଆକାର ବୃଦ୍ଧି କରାଯାଇଛି ମାତ୍ର ହେଥିରେ ଗୋଟିଏ ବିଷୟ ପୁନଃ ପୁନଃ ପଢିବାଦ୍ୱାରା କେଣି କିଛି ଶିକ୍ଷା ମିଳି ନପାରେ । ତେଣୁ ଆମ୍ଭେ ଏହି ଲିଖିତ ବିଷୟ ଗୁଡିକ ପୁନଃ ପୁନଃ ନ ଲେଖି ବିଷୟମାନ ସର୍ବସାଧାରଣ ବୁଝିବା ଭଳି କରିଅଛୁଁ । ଅକାରଣରେ ବହିଟି କଳେବର ବୃଦ୍ଧି କରିନାହୁଁ । ଥରେ ପଢିଲେ ସହଜରେ ଜାଣିପାରିବ ।

ପ୍ରଥମ ଭାଗ ଟ ୨୧

ଦ୍ୱିତୀୟ ଭାଗ ଟ ୨୧

ଦୁଇଭାଗ ଏକତ୍ର ସୁନ୍ଦର ମୂଲ୍ୟ ଟ ୪୧ ମାତ୍ର

ଏକମାତ୍ର ପ୍ରାପ୍ତିସ୍ଥାନ

ପ୍ରୋପ୍ରାଇଟର ଶ୍ରୀ ମୋହନଚରଣ ଦାସ ।

ମନମୋହନ ପୁସ୍ତକାଳୟ ।

ଚାନ୍ଦନୀଚୌକ କଟକ ।

Printed by M. C. Das at the Manamohan Press Cuttack 1931.